ତୃତୀୟ ଭାଗ



# ବିଜ୍ଞାନ ପ୍ରତିଭା

ପାଞ୍ଚ ଖଣ୍ଡ : ପ୍ରତ୍ୟେକର ମୂଲ୍ୟ ଦୁଇଟଙ୍କା

ଓଡ଼ିଶା ବୁକ୍ ଷ୍ଟୋର

କଟକ-୭୫୩-୦୨

ହାଇସ୍କୁଲ, ଏମ୍. ଇ. ଓ ଉ. ପ୍ରା. ସ୍କୁଲ ପାଇଁ ଡ. ପି. ଆଇ.ଙ୍କଦ୍ୱାରା
ପ୍ରାଇଜ ଲାଇବ୍ରେରୀ ବହି ରୂପେ ଅନୁମୋଦିତ
( No. 42287 Dt 28 12. 78 )

---

# ବିଜ୍ଞାନ ପ୍ରତିଭା

## ତୃତୀୟ ଭାଗ

ପରମେଶ୍ୱର ତ୍ରିପାଠୀ



ଓଡ଼ିଶା ବୁକ୍ ଷ୍ଟୋର

ଲେଖକ :

**ଶ୍ରୀ ଯମେଶ୍ୱର ତ୍ରିପାଠୀ**

ତ୍ରିପାଠୀ ଭବନ, ଆଠଗଡ଼

ପ୍ରକାଶକ :

ଶ୍ରୀ ଗୋବିନ୍ଦଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ

ରାସପୂର୍ଣ୍ଣିମା, ୧୯୭୭

ଦ୍ୱିତୀୟ ସଂସ୍କରଣ—୧୯୮୦

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ,** କଟକ-୨

**ମୂଲ୍ୟ—ଦୁଇ ଟଙ୍କା**

## ବିଜ୍ଞାନ ପ୍ରତିଭା

( ପ୍ରଥମ ଭାଗ )

ଏଥିରେ ଅଛି—

୧। ସାର୍ ସି. ଭି. ରମଣ
୨। ସାର୍ ଜଗଦୀଶଚନ୍ଦ୍ର ବୋଷ
୩। ଡକ୍ଟର ମେଘନାଦ ସାହା
୪। ଡକ୍ଟର ପି. ସି. ରାୟ
୫। ଡକ୍ଟର ପ୍ରାଣକୃଷ୍ଣ ପରିଜା

ମୂଲ୍ୟ—ଟ ୨-୦୦



## ବିଜ୍ଞାନ ପ୍ରତିଭା

( ଦ୍ୱିତୀୟ ଭାଗ )

ଏଥିରେ ଅଛି—

୧। ଆର୍ଯ୍ୟଭଟ୍ଟ
୨। ବରାହ ମିହିର
୩। ଭାସ୍କରାଚାର୍ଯ୍ୟ
୪। ସତ୍ୟେନ୍ଦ୍ରନାଥ ବୋଷ
୫। ଡକ୍ଟର ଏମ୍. ବିଶ୍ୱେଶ୍ୱରାୟା
୬। ସାମନ୍ତ ଚନ୍ଦ୍ରଶେଖର
୭। ହୋମି ଜାହାଙ୍ଗୀର ଭାବା

ମୂଲ୍ୟ—ଟ ୨-୦୦

# ସୂଚୀ





# ଉଇଲିୟମ୍ ହାର୍ଭେ

( ୧୫୭୮-୧୬୫୭ )

ଥୋମାସ ହାର୍ଭେ ଇଂଲଣ୍ଡର ଜଣେ ପ୍ରଖ୍ୟାତ ବ୍ୟବସାୟୀ । ତାଙ୍କର ସାତ ପୁଅ ଓ ଗୋଟିଏ ଝିଅ । ଭଗବାନ ତ ଐଶ୍ୱର୍ଯ୍ୟରେ ଅଭାବ କରି ନ ଥାନ୍ତି, ତେଣୁ ଯେଉଁ ପୁଅ ଯାହା ପଢ଼ିବାକୁ ଇଚ୍ଛା କରୁଥିଲା ତାହାକୁ ସେହି ବିଷୟରେ ସେ ପଢ଼ିବାକୁ ଛାଡ଼ି ଦେଉଥିଲେ । ଏହିପରି ସେ ସାତୋଟି ପୁଅଙ୍କର ଭାଗ୍ୟ ଗଢ଼ି ବସିଲେ ।

ସାତ ପୁଅଙ୍କ ଭିତରେ ଯେଉଁ ପୁଅଟି ଉଚ୍ଚତାରେ ସାନ ତାହାର ନାମ ଥୋମାସ ଉଇଲିୟମ୍ ଦେଇଥିଲେ । ଆମମାନଙ୍କ ଭିତରୁ ଯେପରି ନାମ ପଛରେ କିଛି ସାଙ୍ଗିଆ—ଯଥା ତ୍ରିପାଠୀ, ଦାସ, ମହାନ୍ତି, ମହାପାତ୍ର ପ୍ରଭୃତି ଅଛି ସେହିପରି ଉଇଲିୟମଙ୍କର ଉପାଧି ଥିଲା ହାର୍ଭେ ।

୧୫୭୮ ଖ୍ରୀ: ଅ: ଏପ୍ରିଲ ପହିଲା ଦିନ ଉଇଲିୟମ ଜନ୍ମଗ୍ରହଣ କରିଥିଲେ । ଏପ୍ରିଲ ପହିଲାକୁ ଆମେ ସମସ୍ତେ ନିର୍ବୋଧର ଦିନ ବୋଲି ଜାଣୁ । ନିର୍ବୋଧ ଦିବସରେ ଜନ୍ମ ହୋଇଥିଲେ ବୋଲି ଉଇଲିୟମ କିନ୍ତୁ ଆଦୌ ନିର୍ବୁଦ୍ଧିଆ ନ ଥିଲେ । ସେ ନିର୍ବୁଦ୍ଧିଆ ହୋଇଥିଲେ ଆଜି ସମଗ୍ର ପୃଥିବୀରେ କ'ଣ ତାଙ୍କର ଯଶ ପ୍ରସାର ଲାଭ କରି ପାରିଥାନ୍ତା ?

ଉତ୍କଳପ୍ରେମ ୧୫୯୩ ମସିହାରେ କେମ୍ବ୍ରିଜ ସ୍କୁଲରୁ ମାଟ୍ରିକ ପାସ କଲା ପରେ ପାଡୁଆ ବିଶ୍ୱବିଦ୍ୟାଳୟରେ ଡାକ୍ତରୀ ପଢ଼ିବା ପାଇଁ ଭର୍ତ୍ତି ହେଲେ । ଡାକ୍ତରୀ ପଢ଼ୁଥିବା ବେଳେ ଶରୀରତତ୍ତ୍ୱ (ଆନାଟୋମି) ଓ ଅସ୍ତ୍ରୋପଚାର (ସର୍ଜରୀ) ବିଷୟରେ ଉଇଲିୟମଙ୍କର ବୁଦ୍ଧି ଏବଂ ବିଚକ୍ଷଣତା ଦେଖି ଅଧ୍ୟାପକମାନେ ବିସ୍ମିତ ହୋଇ ଯାଉଥିଲେ । ଇଟାଲି ଦେଶରେ ଥିବା ଏହି ପାଡୁଆ ମେଡ଼ିକାଲ କଲେଜ ସେତେବେଳେ ପାଶ୍ଚାତ୍ୟ ଜଗତରେ ଖୁବ୍ ପ୍ରସିଦ୍ଧ ହୋଇଥିଲା । ୟୁରୋପର ବିଭିନ୍ନ ଅଞ୍ଚଳରୁ ମେଧାବୀ ଛାତ୍ରମାନେ ଆସି ଏଠାରେ ପଢ଼ୁଥିଲେ ।

କ୍ଲାସରେ ଅଧ୍ୟାପକ ଯାହା ପଢ଼ାଇଦେଲେ ସେତକ ଜାଣି ହାର୍ଭେ କଦାପି ସନ୍ତୁଷ୍ଟ ହେଉ ନ ଥିଲେ । ସେହି ଲେକ୍‌ଚରସବୁ ଶୁଆ ଭଳି ଘୋଷି ପାଶ୍ କରିବା ତାଙ୍କର ନୀତିବିରୁଦ୍ଧ ଥିଲା । ନିଜେ ପରୀକ୍ଷା କରି ସମସ୍ତ ବିଷୟର ସତ୍ୟାସତ୍ୟ ଜାଣିବାକୁ ସେ ଇଚ୍ଛା କରୁଥିଲେ ।

ଆନାଟୋମି ହଲ୍‌ରେ ହୃତ୍‌ପିଣ୍ଡ ଉପରେ ସେ ଯେଉଁ ଲେକ୍‌ଚର ଶୁଣୁଥିଲେ ତାହା ସତ କି ମିଛ ଜାଣିବା ପାଇଁ ସେ ବଜାରକୁ ଗଲେ ସଦାବେଳେ ଜୀଅନ୍ତା ବଡ଼ ମାଛ କିଣି ଆଣୁଥିଲେ । ଏହି ଜୀଅନ୍ତା ମାଛକୁ ତାହାର ମୃତ୍ୟୁ ପର୍ଯ୍ୟନ୍ତ ଗଭୀର ଭାବରେ ନିରୀକ୍ଷଣ କରୁଥିଲେ । ତାହାର ହୃତ୍‌ପିଣ୍ଡ କିପରି କିପରି ଖୋଲୁଛି ଏବଂ ବନ୍ଦ ହେଉଛି ତାହାକୁ ଅନୁଧ୍ୟାନ କରୁଥିଲେ । ଏହିପରି ପରୀକ୍ଷା କରୁ କରୁ ସେ ଜାଣିପାରିଲେ ଯେ କଲେଜରେ ଅଧ୍ୟାପକ ହୃତ୍‌ପିଣ୍ଡକ୍ରିୟା ବିଷୟରେ ଯାହା ପଢ଼ାଉଛନ୍ତି ତାହା ଆଦୌ ଠିକ୍ ନୁହେଁ ।

୧୬୦୧ ମସିହାରେ ପାଡୁଆ କଲେଜରୁ ଡାକ୍ତରୀ ଶାସ୍ତ୍ରରେ ଡିଗ୍ରୀ ହାସଲ କରିବା ପରେ ପରେ ସେ ଷଷ୍ଠ ଏଡ଼ଓ୍ୱାର୍ଡ଼ଙ୍କର ଡାକ୍ତର ଭାବରେ ନିଯୁକ୍ତି ପାଇଗଲେ ।

ପାଠ ପଢ଼ା ସରିଲା । ସ୍ନାତକ ବି ମିଳିଗଲା । ଏଣିକି ଘରସଂସାର କରିବା କଥା । ବାପା ତାହାଙ୍କୁ ବିବାହ କରାଇଦେଲେ । ଲଣ୍ଡନରେ ହାର୍ଭେ ସବୁ ଦିନ ପାଇଁ ରହି ତାଙ୍କର ଘରୋଇ ଡାକ୍ତରୀ ଚିକିତ୍ସା ଆରମ୍ଭ କଲେ ।

ହାର୍ଭେଙ୍କର ମଧୁର ବ୍ୟବହାର ଏବଂ ରୋଗୀଙ୍କ ପ୍ରତି ଆନ୍ତରିକ ନିଷ୍ଠା ହେତୁ ସେ ଘରୋଇ ଚିକିତ୍ସା କରିବାର ବର୍ଷ କେତୋଟା ପରେ "ରୟାଲ କଲେଜ ଅଫ୍ ଫିଜିସିଆନ୍ସ"ର ଫେଲୋ ଭାବରେ ନିର୍ବାଚିତ ହୋଇଥିଲେ । ଏହି କଲେଜର ଫେଲୋ ରୂପେ କେବଳ ବିଶିଷ୍ଟ ଡାକ୍ତର-ମାନଙ୍କୁ ନିଯୁକ୍ତି ମିଳିଥାଏ । ଡକ୍ଟର ହାର୍ଭେ ଏହି କଲେଜରେ ତିରିଶ ବର୍ଷ କାଳ ସାମୟିକ ଅଧ୍ୟାପକ ଭାବରେ କାର୍ଯ୍ୟ କରିଥିଲେ । ଶରୀରତତ୍ତ୍ୱ ( ଆନାଟୋମି ) ଏବଂ ସର୍ଜରୀ ( ଅସ୍ତ୍ରୋପଚାର ) ମୁଖ୍ୟତଃ ତାଙ୍କର ଅଧ୍ୟାପନାର ବିଷୟବସ୍ତୁ ଥିଲା ।

ହାର୍ଭେଙ୍କଦ୍ୱାରା ଆବିଷ୍କୃତ ହୃତ୍‌ପିଣ୍ଡଦ୍ୱାରା ରକ୍ତ ସଞ୍ଚାଳନର ପ୍ରକ୍ରିୟା ପୂର୍ବରୁ ବୈଜ୍ଞାନିକ ଗାଲେନ୍ ଯେଉଁ ତଥ୍ୟ ରଖି ଦେଇ ଯାଇଥିଲେ ତାହାକୁ ଡାକ୍ତରୀ ଛାତ୍ରମାନେ ପଢ଼ି ପାଶ୍ କରୁଥିଲେ । ହାର୍ଭେ "ରୟାଲ କଲେଜ ଅଫ୍ ଫିଜିସିଆନ୍ସ"ରେ ଅଧ୍ୟାପକ ରୂପେ ଯୋଗ ଦେଇପାରିଲା ପରେ ସେ ଛାତ୍ରାବସ୍ଥାରୁ ଅନୁଧ୍ୟାନ କରି ଆସୁଥିବା ହୃଦ୍‌ଯନ୍ତ୍ରକ୍ରିୟା ବିଷୟରେ ଗବେଷଣା ଚଳାଇବାକୁ ସୁବିଧା ପାଇଲେ । ଜୀଅନ୍ତା ମନୁଷ୍ୟର ଶରୀର କାଟି ତାର ହୃଦ୍‌ଯନ୍ତ୍ର ପରୀକ୍ଷା କରିବା ସେତେବେଳେ କ'ଣ କେତେବେଳେ ମଧ୍ୟ ସମ୍ଭବପର ନୁହେଁ । ତେଣୁ ସେ ଛୋଟ ଛୋଟ ପଶୁ ପକ୍ଷୀଙ୍କୁ ପରୀକ୍ଷା କରିବାକୁ ଆରମ୍ଭ କଲେ । ଅବଶ୍ୟ ଏହି ଗବେଷଣାରେ କୃତକାର୍ଯ୍ୟ ହେବା ପାଇଁ ତାଙ୍କୁ ପଚିଶ ବର୍ଷ ସମୟ ଲାଗିଥିଲା ।

ହୃଦ୍‌ଯନ୍ତ୍ରଦ୍ୱାରା ରକ୍ତ ସଞ୍ଚାଳନ ପ୍ରକ୍ରିୟାର ନୂତନ ତଥ୍ୟଟିକୁ ସେ ଯେତେବେଳେ ପୁସ୍ତକ ଆକାରରେ ପ୍ରକାଶିତ କଲେ ସେତେବେଳେ ଅନ୍ତର୍ଜାତିକ କ୍ଷେତ୍ରରେ ତାଙ୍କର ସୁନାମ ଯଥେଷ୍ଟ ବଢ଼ିଗଲା ।

ଡକ୍ଟର ହାର୍ଭେ ପ୍ରମାଣ କରି ଦେଖାଇଦେଲେ ଯେ ହୃତ୍‌ପିଣ୍ଡ ରକ୍ତ ସଞ୍ଚାଳନର ସର୍ବପ୍ରଧାନ ଅଙ୍ଗ । ହୃତ୍‌ପିଣ୍ଡ କ୍ରିୟା ବନ୍ଦ ହୋଇଗଲେ ଶରୀରର ବିଭିନ୍ନ ଅଙ୍ଗକୁ ରକ୍ତ ଯୋଗାଣ ବନ୍ଦ ହୋଇଯିବାରୁ ମନୁଷ୍ୟର ମୃତ୍ୟୁ ହୁଏ । ହୃତ୍‌ପିଣ୍ଡ ମାଂସପେଶୀରେ ନିର୍ମିତ ଏକ ଥଳି । ଏହାର ଆକାର ପାନପତ୍ର ପରି । ଏହାର ଚଉଡ଼ା ଅଂଶଟି ଦୁଇଟି କୋଠରୀରେ ଏବଂ ସରୁଆ ଅଂଶଟି ମଧ୍ୟ ଦୁଇଟି କୋଠରୀରେ ବିଭକ୍ତ । ଚଉଡ଼ା ଅଂଶର କୋଠରୀ ଦୁଇଟି ବାମ ଓ ଦକ୍ଷିଣ ଅଳିନ୍ଦ ଏବଂ ତଳ ଦୁଇଟି ବାମ ଓ ଦକ୍ଷିଣ ନିଳୟ ରୂପେ ପରିଚିତ । ଅଳିନ୍ଦ ଓ ନିଳୟ ଭିତରେ ପତଳା ମାଂସପେଶୀର ଦୁଇଟି ପ୍ରାଚୀର ଅଛି । ବାମ ଅଳିନ୍ଦ ଓ ଦକ୍ଷିଣ ଅଳିନ୍ଦ ଭିତରେ ଯେପରି ପଥ ନ ଥାଏ ସେହିପରି ବାମ ଓ ଦକ୍ଷିଣ ନିଳୟ ମଝିରେ ମଧ୍ୟ ବାଟ ନ ଥାଏ । ବାମ ଅଳିନ୍ଦରୁ ବାମ ନିଳୟକୁ ଏବଂ ଦକ୍ଷିଣ ଅଳିନ୍ଦରୁ ଦକ୍ଷିଣ ନିଳୟକୁ ବାଟ ଥାଏ । ତାହା ପତଳା କପାଟିକାଦ୍ୱାରା ବନ୍ଦ ହୋଇଥାଏ । ସେହି ପତଳା ପରଦାକୁ ଭାଲବ୍ କୁହନ୍ତି । ଅଳିନ୍ଦର ଚାପ ସୃଷ୍ଟି ହେଲେ ନିଳୟକୁ ରକ୍ତ କ୍ଷରିତ ହୋଇଥାଏ । ନିଳୟରୁ ଚାପ ପାଇବା ମାତ୍ରେ ଭାଲ୍‌ବ୍ ବନ୍ଦ ହୋଇଯାଏ ଏବଂ ରକ୍ତ ଆସିବା ବନ୍ଦ ହୁଏ । ନିଳୟରୁ ରକ୍ତସବୁ ଧମନୀ ଦ୍ୱାରା ସଞ୍ଚାଳିତ ହୋଇଥାଏ ।

ଶରୀରର ସମସ୍ତ ଦୂଷିତ ରକ୍ତ ଆସି ଦକ୍ଷିଣ ଅଳିନ୍ଦରେ ପହଞ୍ଚେ ଏବଂ ସେଠାରୁ ଦକ୍ଷିଣ ନିଳୟକୁ ଯାଏ । ଦକ୍ଷିଣ ନିଳୟରୁ ଫୁସ୍‌ଫୁସ୍‌କୁ

ସଞ୍ଚାଳିତ ହୁଏ । ଫୁସ୍‌ଫୁସ୍‌ରେ ରକ୍ତ ପରିଷ୍କୃତ ହୋଇ ପୁଣି ବାମ ଅଳିନ୍ଦକୁ ଫେରିଆସେ ଏବଂ ସେଠାରୁ ବାମ ନିଳୟକୁ ଯାଏ । ବାମ ନିଳୟରୁ ପରିଷ୍କୃତ ରକ୍ତ ଧମନୀଦ୍ୱାରା ଦେହର ବିଭିନ୍ନ ଅଂଶକୁ ସଞ୍ଚାଳିତ ହୋଇଯାଏ ।

ଡକ୍ଟର ହାର୍ଭେ ଏହି ରକ୍ତ ସଞ୍ଚାଳନ ପ୍ରକ୍ରିୟା ଆବିଷ୍କାର କରିବା ଫଳରେ ଚିକିତ୍ସାଶାସ୍ତ୍ରରେ ଶୃଙ୍ଖଳା ସୃଷ୍ଟି ହେଲା । ହାର୍ଭେ ତାଙ୍କର ଏହି ତଥ୍ୟ ଯେତେବେଳେ ପ୍ରକାଶ କଲେ, ଅଧିକାଂଶ ରୋଗୀ ତାଙ୍କୁ ପାଗଳ ବୋଲି ଭାବି ତାଙ୍କ ପାଖରୁ ଯାଇ ଅନ୍ୟତ୍ର ଚିକିତ୍ସିତ ହୋଇଥିଲେ । ଅନେକ ସହକର୍ମୀ ଡାକ୍ତର ମଧ୍ୟ ତାଙ୍କୁ ବିଦ୍ରୂପ କରିଥିଲେ ।

କିନ୍ତୁ ଡକ୍ଟର ହାର୍ଭେ କ'ଣ କହିଥିଲେ ଜାଣ ? ସେ କହିଲେ, ମୁଁ ସତ୍ୟକୁ ଭଲପାଏ ଏବଂ ପ୍ରାଣୀମାନଙ୍କ ଦେହରେ ପରୀକ୍ଷା କରି ଯାହା ପାଇ-ପାରିଛି ତାହାକୁ ଅଭ୍ରାନ୍ତ ବୋଲି ଏବେ ସୁଦ୍ଧା କହୁଛି ।

ପରିଶେଷରେ ଡକ୍ଟର ହାର୍ଭେଙ୍କ ଆବିଷ୍କାର ବିଶ୍ୱର ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଏକ ମାଇଲ୍ ଖୁଣ୍ଟ ରୂପେ ସବୁଦିନ ପାଇଁ ରହିଲା । ହାର୍ଭେ ପ୍ରତ୍ୟେକ ଡାକ୍ତରୀ ଛାତ୍ରର ପ୍ରାତଃସ୍ମରଣୀୟ ହେଲେ ।

ଚାର୍ଲସ ପ୍ରଥମଙ୍କର ସେ ଘରୋଇ ଚିକିତ୍ସକ ରୂପେ ନିଯୁକ୍ତ ହୋଇ ଅଶେଷ ଖ୍ୟାତି ଅର୍ଜନ କରିଥିଲେ । ସେ ଅମୃତହସ୍ତ ଥିଲେ । ତେଣୁ ପ୍ରତ୍ୟେକ ରୋଗୀଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ହାର୍ଭେଙ୍କ ହାତ ଲାଗିଲେ ସେ ନିଶ୍ଚୟ ଆରୋଗ୍ୟ ଲାଭ କରିପାରିବେ । ତେଣୁ ପ୍ରତିଦିନ ତାଙ୍କ

କ୍ଲାନକ୍‌ରେ ଅସମ୍ଭବ ଭିଡ଼ ଜମି ଉଠୁଥିଲା । ଏତେ ରୋଗୀଙ୍କୁ ପରୀକ୍ଷା କରି ଔଷଧ ଲେଖି ଦେଉଥିଲେ ସୁଦ୍ଧା ଅନ୍ତରକ୍ତ ପରିଶ୍ରମ ହେତୁ ହାର୍ଦ୍ଦେ କଦାପି ରୋଗୀମାନଙ୍କ ଉପରେ ବିରକ୍ତ ହେଉ ନ ଥିଲେ ।

ଜୀବନର ଶେଷ ମୂହୂର୍ତ୍ତ ପର୍ଯ୍ୟନ୍ତ ସେ ମୃତ ମଣିଷ ଓ ପଶୁପକ୍ଷୀ-ମାନଙ୍କର ଶରୀର ବ୍ୟବଚ୍ଛେଦ କାର୍ଯ୍ୟରୁ ବିରତ ହୋଇ ନ ଥିଲେ ।

୧୬୫୭ ମସିହାରେ ଏହି ମହାନ୍ ବ୍ୟକ୍ତିଙ୍କର ସ୍ୱର୍ଗାରୋହଣ ହୋଇଥିଲା ।



# ସାର୍ ଆଇଜାକ୍ ନିଉଟନ୍

( ୧୬୪୨—୧୭୨୭ )

"ବିଜ୍ଞାନ ମହାସାଗର ଅସୀମ, ତାର ଉପକୂଳରୁ ମୁଁ କେତେ ଖଣ୍ଡ ଉପଳ ମାତ୍ର ସଂଗ୍ରହ କରୁଛି।" ଏ ଉକ୍ତି କାହାର ଥିଲା ଜାଣନ୍ତି ? ସେ ହେଉଛନ୍ତି ବିଶ୍ୱବିଖ୍ୟାତ ବୈଜ୍ଞାନିକ ନିଉଟନ୍। ଗଛରେ ଫଳ ବଢ଼ୁଥିବା ଆସିଲେ ସେ ନଇଁପଡ଼େ। ଜ୍ଞାନର ଚରମ ସୀମାକୁ ସ୍ପର୍ଶ କଲା ପରେ ମନୀଷୀମାନେ ବିନମ୍ର ହୁଅନ୍ତି। ଏହି ବିନମ୍ର, ବିଜ୍ଞାନୀ ମହାପୁରୁଷ ଯିଏ କି ଜନ୍ମରୁ ବାପ ମୁହଁ ଦେଖି ନ ଥିଲେ ଏବଂ ଦୁଇ ବର୍ଷ ସମୟରେ ଯାହାଙ୍କୁ ଜନ୍ମ କଲା ମାଆ ଜେଜେମାଆଙ୍କ କୋଳରେ ଛାଡ଼ିଦେଇ ନିଜର ନୂତନ ସଂସାର କରିବାକୁ ଚାଲିଗଲେ, ସେହି ଆଜନ୍ମ ବ୍ରହ୍ମଚାରୀ ସାର୍ ଆଇଜାକ୍ ନିଉଟନ୍ ୧୬୪୨ ମସିହା ଡିସେମ୍ବର ପଚିଶ ତାରିଖ ଦିନ ଇଂଲଣ୍ଡର ଏକ ଛୋଟିଆ କୃଷୀକୁଳରେ ଜନ୍ମ ହୋଇଥିଲେ।

ନିଉଟନ୍ ଜନ୍ମ ହେଲାବେଳେ ଏତେ ଦୁର୍ବଳ ଥିଲେ ଯେ ସେ ବଞ୍ଚିବେ ବୋଲି କେହି ଆଶା କରୁ ନ ଥିଲେ। ଦୁଇ ବର୍ଷ ବୟସରୁ ତାଙ୍କୁ ଲାଳନପାଳନ କରିବାର ଦାୟିତ୍ୱ ଜେଜେମାଆଙ୍କ ଉପରେ

ପଡ଼ିଲା । ତାଙ୍କର ଜେଜେମାଆ ବଡ଼ ଧର୍ମବିଶ୍ୱାସୀ ଥିଲେ । ନିଉଟନଙ୍କୁ ବଞ୍ଚାଇବା ପାଇଁ ତାଙ୍କୁ ବହୁତ କଷ୍ଟ ସହିବାକୁ ପଡ଼ିଥିଲା ।

ଯାହାହେଉ ଭଗବାନଙ୍କ ଅପାର କୃପାରୁ ନିଉଟନଙ୍କର ବାଳାରିଷ୍ଟ କଟିଗଲା । ଏଣିକି ପାଠ ପଢ଼ିବା କଥା । କିନ୍ତୁ ପଢ଼ାଇବ କିଏ ? କଥାରେ ଅଛି, ଯାହାର ମାଆ ନାହିଁ ତାର ସାହା ନାହିଁ । ଆଉ ଯିଏ ବାପ-ମାଆ ଛେଉଣ୍ଡ ହେଲା ତାହା କଥା ନ କହିବା ଭଲ । ବୁଢ଼ୀ ମାଆ ନାତିକୁ ସ୍କୁଲକୁ ପଠାଇବା ପରିବର୍ତ୍ତେ ବିଲକୁ ପଠାଇଲେ । ଶସ୍ୟସବୁ ଜଗାରଖା କରିବାକୁ ଯାଇ ନିଉଟନ କିନ୍ତୁ ଅନ୍ୟ କାମରେ ମନ ଦେଲେ । ସୂର୍ଯ୍ୟଙ୍କର ଛାଇ ମାପି ସୂର୍ଯ୍ୟ ଘଡ଼ି ତିଆରି କରିବାକୁ ଉଦ୍ୟମ କଲେ ତ ବଗିଚାରେ ବହୁଥିବା ପବନ ସାହାଯ୍ୟରେ କଳ ଚଳାଇବାର ବନ୍ଦୋବସ୍ତ କଲେ । ବଗିଚାରେ ଫଳଟିଏ ଗଛରୁ ପଡ଼ିଲେ ସେ ଭାବିଲେ ତଳେ ଫଳଟି ନ ପଡ଼ି ମଝିରେ ଝୁଲି ରହିଲା ନାହିଁ କାହିଁକି ?

ବୁଢ଼ୀ ମାଆ ଭାବିଲେ ଏ ଚଗଲା ଟୋକାଟା ମଣିଷ ହେବ ନାହିଁ । ଏଇଟାକୁ ରଖି କୌଣସି ଲାଭ ହେବ ନାହିଁ । ବାୟୁଟାଏ, ତେଣୁ ଯାହା ହୋଇ ତାହା ମୁଣ୍ଡରେ ଲଦିଦେଲେ ଗଲା । କିଏ ନେବ ଏତେ ଜଞ୍ଜାଳ । ତେଣୁ ସେ ନିଉଟନଙ୍କ ମାଆଙ୍କର ଠିକଣା ବୁଝି ନିଉଟନଙ୍କୁ ତାଙ୍କ ପାଖକୁ ପଠାଇଦେଲେ ।

ମାଆ ସିନା ସୁଖ ଆଶାରେ ନିଉଟନଙ୍କୁ ଛାଡ଼ି ପଳାଇ ଯାଇ ଆଉ ଥରେ ବିବାହ କରିଥିଲେ—କିନ୍ତୁ ମଣିଷ ଭବୁରକୁ ଦଇବ ଭବୁର ଆନ । ଏଠାରେ ଆସି ତାଙ୍କ ମାତା ଆହୁରି ଥରେ ବିଧବା ହେଲେ । ନିଉଟନ ତାଙ୍କ ନିକଟରେ ପହଞ୍ଚିବା କ୍ଷଣି ସେ ଆନନ୍ଦିତ ହେଲେ । ମନେ ମନେ ଭାବିଲେ ଯାହାହେଉ ଏଇ ଖଣ୍ଡିକୁ ଆଶ୍ରା କରି ସେ ବଞ୍ଚିଯିବେ···।

ମାଆ ମଧ୍ୟ ନିଉଟନଙ୍କୁ କ୍ଷେତକୁ କାମ କରିବାକୁ ପଠାଇଲେ । କିନ୍ତୁ ପୁଣି ସେଇ ଅବସ୍ଥା । କୃଷି କାମ କେଉଁଠି ଓ ନିଉଟନ କେଉଁଠି ? ସେ ପୁଣି ତାଙ୍କ ପୁରୁଣା ଧନ୍ଦାରେ ଲାଗିଗଲେ । ଗଛଲତା ପବନ ଜଳ ଆଉ ସୂର୍ଯ୍ୟ ଘଡ଼ି ତିଆରି । ମାଆ ପୁଅର ଏଇ ମନ ଦେଖି ତାକୁ ଶେଷରେ କେମ୍ବ୍ରିଜ କଲେଜରେ ପାଠ ପଢ଼ାଇବାକୁ ନାମ ଲେଖାଇଦେଲେ । ପାଠ ଆରମ୍ଭ ବେଳକୁ ନିଉଟନଙ୍କୁ ବୟସ ହୋଇଛି ଷୋଳ ବର୍ଷ ।

କଥାରେ କହନ୍ତି, ଛକୁ ଉଠା କାଠ—ଆଉ ନଣ ଉଠା ପାଠ । ଅର୍ଥାତ୍ ଡେରିରେ ପାଠ ପଢ଼ିଲେ ସେ ଘଡ଼ିକୁ ପାଏ ନାହିଁ କି ପେଡ଼ିକୁ ପାଏ ନାହିଁ । ମଗଜ ପାକଳ ହୋଇଯାଇଥାଏ । ତେଣୁ ପାଠ ମନ ରହେ ନାହିଁ । କିନ୍ତୁ ନିଉଟନ ଯଦି କଲେଜକୁ ନ ଆସିଥାନ୍ତେ ତେବେ ସେ ତ ଜୀବନସାରା ଅପଦାର୍ଥ ହୋଇ ରହି ଯାଇଥାନ୍ତେ । ପୃଥିବୀ କ'ଣ ତାଙ୍କ ପରି ବୈଜ୍ଞାନିକଙ୍କୁ ପାଇ ପାରିଥାନ୍ତା ?

ଗଣିତ ଜ୍ଞାନରେ ତାଙ୍କର ଅସାଧାରଣ ଜ୍ଞାନ ଦେଖି ଅଧ୍ୟାପକମାନେ ସୁଦ୍ଧା ବିସ୍ମିତ ହୋଇ ଯାଉଥିଲେ । ମାତ୍ର ଚାରୋଟି ବର୍ଷ ପାଠ ପଢ଼ିବା ପରେ ସେ କେମ୍ବ୍ରିଜ କଲେଜରୁ ବି. ଏ. ପାଶ କଲେ ।

ପାଠ ପଢ଼ୁନ ଥିଲେ ନାହିଁ, କିନ୍ତୁ ପାଠ ପଢ଼ା ଆରମ୍ଭ ହେବା ମାନେ ଆଉ ବନ୍ଦ ହେବାର ପ୍ରଶ୍ନ ନାହିଁ । ଅଧିକ ପାଠ ପଢ଼ିବାକୁ ଇଚ୍ଛା । ମଣିଷ ଇଚ୍ଛା କଲେ ଯଦି ସବୁ ହୋଇ ଯାଉଥାନ୍ତା ତେବେ ସଂସାରରେ ଏତେ ଦୁଃଖ କଷ୍ଟ କ'ଣ ଥାନ୍ତା ? ପାଠ ପଢ଼ିବାକୁ ନିଉଟନ ଆଗ୍ରହୀ । ମାଆ ମଧ୍ୟ ପୁଅର କୃତିତ୍ୱ ଦେଖି ମନେ ମନେ ସ୍ଥିର କଲେ ଯେତେ ଦୂର ପର୍ଯ୍ୟନ୍ତ ନିଉଟନ ପଢ଼ିବାକୁ ଇଚ୍ଛା କରିବେ ସେତେଦୂର ପର୍ଯ୍ୟନ୍ତ ସେ ପଢ଼ାଇବାକୁ ପ୍ରସ୍ତୁତ । ଦରକାର ପଡ଼ିଲେ କ୍ଷେତ ବାଡ଼ି ପଛକେ ବନ୍ଧୀ

କଣ୍ଟଦେବେ । କିନ୍ତୁ ହାୟ ! ଦୀର୍ଘ ଅଠର ମାସ ପାଇଁ ଇଂଲଣ୍ଡର ସବୁ କଲେଜ ବନ୍ଦ ହୋଇଗଲା ।

ଇଂଲଣ୍ଡ ସହରରେ ପ୍ଲେଗ ରୋଗ ମହାମାରୀ ପରି ବ୍ୟାପିଗଲା । ସବୁ ସ୍କୁଲ କଲେଜ ବନ୍ଦ ହୋଇଯିବାରୁ ନିଉଟନଙ୍କୁ ଘରକୁ ଫେରି ଆସିବାକୁ ହେଲା । ମାଆ ଭାବିଲେ, ଘରେ ବସି ପୁଅ କରିବ କ'ଣ ? ଖାଲି ବସିବା ଅପେକ୍ଷା କାଶିବା ଭଲ । ସେ ତାଙ୍କୁ ପୁଣି କ୍ଷେତକୁ ପଠାଇଲେ ।

ଆଗଥର ନିଉଟନ ଯେତେବେଳେ କ୍ଷେତ ଜଗୁଥିଲେ ସେତେବେଳେ ମୂର୍ଖ ଥିଲେ; କିନ୍ତୁ ଏଥର ତ ଶିକ୍ଷିତ ହୋଇଛନ୍ତି । ତେଣୁ ଗ୍ରେଟ ବଗିଚାଟି ଏଥର ତାଙ୍କର ଗବେଷଣାଗାର ହୋଇଗଲା । ଏଥର, ଗଛରୁ ଫଳଟିଏ ପଡ଼ିବା ଷଣି ସେ ଆଉ କାହାକୁ ଏହାର କାରଣ ନ ପଚାରି ଆପେ ଆପେ ଗବେଷଣା କରିବାକୁ ଆରମ୍ଭ କଲେ । ଦୀର୍ଘ ଅଠର ମାସ ଏହି କ୍ଷେତ ବଗିଚାକୁ ଜଗିବା ଭିତରେ ସେ ମାଧ୍ୟାକର୍ଷଣ ଶକ୍ତି ଉଦ୍ଭାବନ କଲେ ।

ଅଠର ମାସ ପରେ ଯେତେବେଳେ ସ୍କୁଲ କଲେଜ ଫିଟିଗଲା ନିଉଟନ ଆଉ ଛାତ୍ରରୂପେ କଲେଜରେ ଯୋଗ ଦେଲେ ନାହିଁ । ତାଙ୍କୁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଗଣିତ ଅଧ୍ୟାପକ ରୂପେ ନିଯୁକ୍ତି ମିଳିଲା । ଯିଏ ଗବେଷଣା କରେ କିମ୍ବା ନୂଆ କିଛି କାମ କରେ, ତାହାକୁ ପାଞ୍ଚ-ପଚିଶଙ୍କୁ ଶୁଣାଇ ଆନନ୍ଦ ପାଏ । ସେହିପରି ନିଉଟନ ଯେତେବେଳେ ତାଙ୍କର ନୂତନ ତଥ୍ୟ ବିଷୟରେ ଜଣାଇବାକୁ ଆରମ୍ଭ କଲେ, ସମସ୍ତେ କିନ୍ତୁ ତାଙ୍କୁ ପ୍ରଶଂସା କରିବା ପରିବର୍ତ୍ତେ ଉପହାସ କଲେ । କହିଲେ ପାଗଳାଟାଏ ।

ସେ ଯେପରି ଭଲ ବକ୍ତୃତା ଦେଇପାରୁ ନ ଥିଲେ ସେହିପରି ବନେଇ ଚୁନେଇ ଭଲ ଲେଖିପାରୁ ନ ଥିଲେ । ତେଣୁ ତାଙ୍କ ସହକର୍ମୀ-ମାନେ ତାଙ୍କୁ ପାଗଳ କହିଲାବେଳେ ଏହି ଜ୍ଞାନ-ପାଗଳ ସେମାନଙ୍କୁ ନିଜର ଉଦ୍ଭାବିତ ତଥ୍ୟକୁ ବର୍ଣ୍ଣନା କରି ବୁଝାଇ ପାରୁ ନ ଥିଲେ ।

ନିଉଟନ ବଡ଼ ଖିଆଲି ଥିଲେ । ସଦାବେଳେ କିଛି ନା କିଛି ସେ ଭାବୁଥିଲା ପରି ଜଣାପଡ଼ନ୍ତି । କେତେବେଳେ ସୂଟ୍ ପିନ୍ଧି ଟାଇ ବାନ୍ଧିବାକୁ ଭୁଲିଯାଇଥିଲେ ତ କେତେବେଳେ ଖାଲି ପାଦରେ ଆସି କଲେଜରେ କ୍ଲାସ ନେବାକୁ ହାଜର । ପାଠ ପଢ଼ୁଛନ୍ତି ଯଦି ସମସ୍ତ କେତେ ହେଲାଣି ସେଥିପ୍ରତି ନିଜର ମଧ୍ୟ ନ ଥାଏ ।

ଅପରର ଅଣ୍ଟାତାମସା କିମ୍ବା ସମାଲୋଚନାକୁ ସେ ଆଦୌ ସହ୍ୟ କରିପାରୁ ନ ଥିଲେ । ତେଣୁ ତାଙ୍କର ମିତ୍ର ସଂଖ୍ୟା ତୁଳନାରେ ଶତ୍ରୁ ସଂଖ୍ୟା ଅଧିକ ଥିଲା । ତାଙ୍କର ଉଦ୍ଭାବିତ ତଥ୍ୟକୁ କେତେକ ବନ୍ଧୁ ପରିହାସ କରି ଏହା ତାଙ୍କର ନୂତନ କାର୍ଯ୍ୟ ନୁହେଁ ଏବଂ ବହୁପୂର୍ବରୁ ସେମାନେ ଜାଣନ୍ତି କହିଲେ ନିଉଟନ ସେମାନଙ୍କୁ ଭର୍ତ୍ସନା କରିବାକୁ କୁଣ୍ଠା ବୋଧ କରନ୍ତି ନାହିଁ । ତାଙ୍କର ଉଦ୍ଭାବିତ ତଥ୍ୟକୁ କାଳେ କିଏ ନିଜର କହି ଦାବୀ କରି-ବସିବ କିମ୍ବା ଉପହାସ କରିବ ଏଇ ଆଶଙ୍କାରେ ସେ ୧୬୬୬ ଖ୍ରୀ: ଅ:ରେ ଯଦିଓ ମହାକର୍ଷଣ ନିୟମ ପ୍ରଣୟନ କଲେ, କିନ୍ତୁ ଅନେକ ଦିନ ପର୍ଯ୍ୟନ୍ତ ସେ ତାହାକୁ ଗୋପନ ରଖିଲେ ।

୧୬୭୧ ମସିହାରେ ଇଂଲଣ୍ଡର ରୟାଲ ସୋସାଇଟିରେ ତାଙ୍କୁ ବକ୍ତୃତା ଦେବା ପାଇଁ ନିମନ୍ତ୍ରଣ ଆସିଲା । ସେହି ସଭାରେ ନିଉଟନ ଯେତେବେଳେ ତାଙ୍କର ମହାକର୍ଷଣ ସମ୍ପର୍କିତ ଗବେଷଣା ଉପରେ ଭାଷଣ ଦେଲେ, ତାହାକୁ ଶୁଣି ତତ୍କାଳୀନ ଅନ୍ୟ ଜଣେ ବୈଜ୍ଞାନିକ ରବର୍ଟ ହୁକ୍

ଏହା ତାଙ୍କର ଗବେଷଣା ବୋଲି କହିବାରୁ ନିଉଟନ ଭୀଷଣ କ୍ଷୁବ୍ଧ ହୋଇଥିଲେ । ସେହିଦିନଠାରୁ ସେ ପ୍ରତିଜ୍ଞା କଲେ ଯେ ତାଙ୍କର କୌଣସି ନୂତନ ତଥ୍ୟ ସେ ଆଉ ପ୍ରକାଶ କରିବେ ନାହିଁ । ସେ ଏତେଦୂର ଜିଦ୍-ଖୋର ଥିଲେ ଯେ ରବର୍ଟ ହୁକ୍‌ଙ୍କର ମୃତ୍ୟୁ ପରେ ତାଙ୍କର ଆଲୋକ ସମ୍ବନ୍ଧୀୟ ପୁସ୍ତକ (Optics)କୁ ପ୍ରକାଶ କଲେ ।

ଯଦିଓ ପଚାଶ ବର୍ଷ ବୟସରେ ନିଉଟନଙ୍କର ମସ୍ତିଷ୍କବିକୃତି ଦେଖାଯାଇଥିଲା, କିନ୍ତୁ ତାହା ପୂର୍ବରୁ ସେ ବିଜ୍ଞାନ ଜଗତକୁ ଅନେକ ଅନେକ ନୂତନ ତଥ୍ୟସବୁ ଯୋଗାଇ ବିଶ୍ୱବିଖ୍ୟାତ ହୋଇସାରିଥିଲେ । ପ୍ରିଜମ୍ ସାହାଯ୍ୟରେ ସୂର୍ଯ୍ୟାଲୋକ କିପରି କେତୋଟି ମୌଳିକ ବର୍ଣ୍ଣ ଆଲୋକରେ ବିଭକ୍ତ ହୁଏ ଏବଂ ପ୍ରତିବିମ୍ବରୁ ବର୍ଣ୍ଣଦୋଷ ଦୂର କରିବା ପାଇଁ ଟେଲିସ୍କୋପର ଉଦ୍ଭାବନ ତାଙ୍କର ବିଜ୍ଞାନ ଜଗତକୁ ମହାନ୍ ଦାନ । ଚନ୍ଦ୍ର ସୂର୍ଯ୍ୟର ଆକର୍ଷଣରେ କିପରି ସମୁଦ୍ରରେ ଜୁଆର ହୁଏ ତାହା ସେ ସ୍ପଷ୍ଟ-ରୂପ ବୁଝାଇପାରିଥିଲେ ।

୧୭୨୭ ମସିହାରେ ହଠାତ୍ ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ହେବାରୁ ଏହି ଆଜନ୍ମବ୍ରହ୍ମଚାରୀ ବୈଜ୍ଞାନିକ ଇହଧାମରୁ ବିଦାୟ ନେଲେ ।



# ହାମ୍ଫ୍ରି ଡାଭି

## ( ୧୭୭୮—୧୮୨୯ )

କୋଇଲଖଣିର ଅନ୍ଧକାର ଗର୍ଭକୁ "ନିରାପଦ ଆଲୋକ" ବା "ସେଫ୍‌ଟି ଲାମ୍ପ"ଦ୍ୱାରା ଯେ କେବଳ ଆଲୋକିତ କରି ନ ଥିଲେ, ବରଂ ସମଗ୍ର ବିଜ୍ଞାନ ଜଗତକୁ ହାମ୍ଫ୍ରି ଡାଭି ଆଲୋକ ଦେଖାଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶ୍ୱର ଅନ୍ୟ ବୈଜ୍ଞାନିକମାନଙ୍କ ଭଳି ଡାଭିଙ୍କୁ ବାଲ୍ୟଶିକ୍ଷା ଗ୍ରହଣ କରିବାର ସୁବିଧା ଓ ସୁଯୋଗ ନ ଥିଲା । ତାଙ୍କ ଘରର ଅବସ୍ଥା ଆଦୌ ଭଲ ନ ଥିଲା ।

ଗରିବ ଘରରେ ପରିବାରର ଆର୍ଥିକ ମାନଦଣ୍ଡ ନିମ୍ନଗାମୀ ଦିନକୁ ଦିନ ତଳରୁ ତଳକୁ ଯିବାରୁ ମାତ୍ର ପନ୍ଦର ବର୍ଷ ବୟସରେ ଡାଭିଙ୍କୁ ସ୍କୁଲ ପାଠପଢ଼ା ତ୍ୟାଗ କରିବାକୁ ହେଲା । ବାପା ପାଠ ପଢ଼ାଇ ପାରିଲେ ନାହିଁ । ଏତେ କମ୍ ବୟସରୁ ଡାଭି ଅବା କରିବେ କ'ଣ ? ଫଳରେ ଏଣେ ତେଣେ ବୁଲିବା ସାର ହେଲା । ଚଢ଼େଇ ଶିକାର କରିବା ଗୋଟିଏ ପେଶା ହୋଇଥିଲା କହିଲେ ଚଳେ ।

ଅଳ୍ପ ଦିନ ପରେ ବାପା ମରିଗଲେ । ଡାଭିଙ୍କ ଉପରେ ସମଗ୍ର ପରିବାରର ଦାୟିତ୍ୱ ଆସି ପଡ଼ିଲା । ବାରବୁଲା ପ୍ରକୃତି ଛାଡ଼ିଗଲା । ମନ

ଘର ଧରିଲା । କ'ଣ, କପରି ଦୁଇ ପଇସା ରୋଜଗାର କରିବେ, ସଦାବେଳେ ଏଇ ଚିନ୍ତା ତାଙ୍କୁ ଅସ୍ଥିର କରି ପକାଇଲା ।

ଇଂଲଣ୍ଡର ପେନ୍‌ଜାନସ୍ ଅଞ୍ଚଳରେ ହାମ୍ଫ୍ରି ଡାଭି ଯେଉଁବେଳେ ଜନ୍ମଗ୍ରହଣ କରିଥିଲେ ସେତେବେଳେ ସମାଜରେ ଉପଯୁକ୍ତ ବିଶ୍ୱ-ବିଦ୍ୟାଳୟର ସ୍ୱୀକୃତିପ୍ରାପ୍ତ ଡାକ୍ତରମାନଙ୍କ ସଂଖ୍ୟା ଅଳ୍ପ ଥିଲା । "କ୍ୱାକ୍" ବା ମୂର୍ଖ ବୈଦ୍ୟଙ୍କର ସଂଖ୍ୟା ଅଧିକ ଥିଲା । ଏମାନେ ଯଦିଓ ଡାକ୍ତର ନୁହନ୍ତି, କିନ୍ତୁ ଔଷଧ ତିଆରି କରୁଥିଲେ ଏବଂ ଚିକିତ୍ସା କରୁଥିଲେ । ସେହିଭଳି ଜଣେ ଚିକିତ୍ସକ ବୋରଲସ୍‌ଙ୍କ ପାଖରେ ସେ ସାହାଯ୍ୟକାରୀ ରୂପେ ଯୋଗ ଦେଲେ । ବୋରଲସ୍ ତାଙ୍କୁ ବିଭିନ୍ନ ପ୍ରକାର ଔଷଧ ତିଆରି କରାଇବା ସଙ୍ଗେ ସଙ୍ଗେ ଇଂରାଜୀ, ଇଟାଲି, ଫ୍ରାନ୍ସ ପ୍ରଭୃତି ଭାଷା ଶିକ୍ଷା ଦେବାକୁ ଲାଗିଲେ ।

ରସାୟନ ବିଦ୍ୟା ପ୍ରତି ଡାଭିଙ୍କର ଆଗ୍ରହ ବଢ଼ିଗଲା । ସେ ଆପଣା ମନକୁ ମନ କେତେକ ପରୀକ୍ଷା କରିବାକୁ ଲାଗିଲେ । ବିଜ୍ଞାନ ସମ୍ବନ୍ଧରେ ପ୍ରାଥମିକ ଜ୍ଞାନ ତ ନାହିଁ, ତେଣୁ ତାଙ୍କର ପରୀକ୍ଷା ଅବା କପରି ସଫଳ ହେବ ?

କାଳକ୍ରମେ ଡାଭିଙ୍କର ବନ୍ଧୁତ୍ୱ ଗ୍ରିଗରୀ ଓ୍ୱାର୍ଟଙ୍କ ସହ ବଢ଼ିଉଠେ । ଗ୍ରିଗରୀ ଓ୍ୱାଟ ହେଉଛନ୍ତି ଜେମ୍‌ସ ଓ୍ୱାଟ ଯିଏ କି ଷ୍ଟିମ୍ ଇଞ୍ଜିନର ଆବିଷ୍କର୍ତ୍ତାଙ୍କର ପୁଅ । ଗ୍ରିଗରୀ ଓ୍ୱାଟ ଡାଭିଙ୍କର ବିଜ୍ଞାନ ପ୍ରତି ମମତା ଦେଖି ଏତେ ଖୁସି ହୋଇଥିଲେ ଯେ ବିଷ୍ଟଲ ସହରରେ ରହୁଥିବା ଡକ୍ଟର ବିଡୋସ ନାମକ ଜଣେ ବୈଜ୍ଞାନିକଙ୍କ ଗବେଷଣା-ଗାରରେ ତାହାଙ୍କୁ ସହକାରୀ ରୂପେ ରଖାଇଦେଲେ ।

ଡକ୍ଟର ବିଡୋସଙ୍କର ଏକ ସୁନ୍ଦରରୂପେ ନିଜକୁ ପ୍ରସ୍ତୁତ କଲେ ଡାଭି । ସହକାରୀ ରୂପେ ଗବେଷଣା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ପରୀକ୍ଷା-

ଗୁଡ଼ିକ ବଡ୍‌ଡୋସଙ୍କ ନିର୍ଦ୍ଦେଶ ଅନୁସାରେ କରୁ-କରୁ ତାଙ୍କର ବାସ୍ତବ ଜ୍ଞାନ ବଢ଼ିବାକୁ ଲାଗିଲା । କ୍ରମଶଃ ସେ ରସାୟନ ଶାସ୍ତ୍ରରେ ସମ୍ୟକ୍ ଜ୍ଞାନ ହାସଲ କରିପାରିଲେ । କୌଣସି ବିଶ୍ୱବିଦ୍ୟାଳୟରେ ଶିକ୍ଷା ନ ପାଇ ମଧ୍ୟ ଡାଭି ବର୍ଷ କେତେଟା ପରେ ଡକ୍ଟର ବଡ୍‌ଡୋସଙ୍କ ଆନୁକୂଲ୍ୟରୁ ଜଣେ ଗବେଷକ ରୂପେ ପରିଚିତ ହେବାକୁ ଲାଗିଲେ ।

ସେତିକିବେଳେ ପ୍ରୀଷ୍ଟଲି ନାଇଟ୍ରସ୍ ଅକ୍‌ସାଇଡ୍ ଆବିଷ୍କାର କରି ସାରିଥାନ୍ତି । ହାମ୍ଫ୍ରି ଡାଭି ଡକ୍ଟର ବଡ୍‌ଡୋସଙ୍କ ଗବେଷଣାଗାରରେ କେତେକ ପଶୁପକ୍ଷୀଙ୍କ ଉପରେ ଏହି ଗ୍ୟାସ ପରୀକ୍ଷା ଚଳାଇଲେ । ଏହା ପୂର୍ବରୁ ବୈଜ୍ଞାନିକମାନେ ମତ ଦେଇଥାନ୍ତି ଯେ ଏହି ଗ୍ୟାସଟି ଅତି ମାରାତ୍ମକ ଏବଂ ଏଥିରୁ ସାମାନ୍ୟ ଅଂଶ ମଣିଷ ଶରୀର ଭିତରକୁ ଗଲେ ବଞ୍ଚିବା ଅସମ୍ଭବ ହୋଇପଡ଼ିବ ।

ଡାଭି ଏହି ନାଇଟ୍ରସ୍ ଅକ୍‌ସାଇଡ୍ ଗ୍ୟାସ୍ ଉପରେ ପରୀକ୍ଷା ଚଳାଇ "ଲାଫି ଗ୍ୟାସ୍" ଆବିଷ୍କାର କଲେ । ଏହି "ଲାଫି ଗ୍ୟାସ" ଆବିଷ୍କୃତ ହେବା ପରେ ତାଙ୍କର ଯଶ ସମଗ୍ର ୟୁରୋପରେ ପ୍ରସରିବାକୁ ଲାଗିଲା । 'ଲାଫି ଗ୍ୟାସ' ହେତୁ ଅନେକ ମାରାତ୍ମକ ରୋଗରୁ ମୁକ୍ତି ମିଳିଲା । ପରବର୍ତ୍ତୀ ଗବେଷଣା ଫଳରେ ଅପରେସନ ସମୟରେ ଏହା ରୋଗୀ ଦେହରେ ପ୍ରୟୋଗ କଲା ପରେ ଯନ୍ତ୍ରଣା କମିଯିବାର ଡାଭି ଗବେଷଣା କରି ଜଣାଇ-ଦେଲେ । ଆଜିକାଲି ଅପରେସନ୍ ସମୟରେ ଯେଉଁ ନିଶ୍ଚେତକ ବା ଆନାସ୍‌ଥେସିଆ ବ୍ୟବହାର କରାଯାଉଛି ତାହାର ମୂଳପତ୍ତନ ଡାଭି ଦେଇଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଡାଭିଙ୍କୁ ଲଣ୍ଡନ ସହରରେ ଥିବା "ରୟାଲ ଇନ୍‌ଷ୍ଟିଚ୍ୟୁଟ୍" ନାମକ ଏକ ଘରୋଇ ଗବେଷଣାଗାରରେ ଅଧ୍ୟାପକ ରୂପେ ଯୋଗ ଦେବାକୁ

ନିମନ୍ତ୍ରଣ ଆସିଲା । ନିଜର ଗବେଷଣା ପଥ ସୁଗମ ହେବା ଆଶା ରଖି ସେ ବ୍ରିଷ୍ଟଲ ସହରରୁ ଡକ୍ଟର ବଡ଼ୋସଙ୍କଠାରୁ ବିଦାୟ ନେଇ ଲଣ୍ଡନକୁ ଚାଲିଆସିଲେ । ଏଠାରେ ପହଞ୍ଚି ସେ ଅଧ୍ୟାପକ ରୂପେ ଯୋଗ ଦେଲେ । ତାଙ୍କର ନିଷ୍ଠା ଏବଂ ସାଧନା ଫଳରେ ସେ ଦିନେ ଏହି "ରୟାଲ ଇନ୍‌ଷ୍ଟିଚ୍ୟୁଟ୍‌"ର ଅଧ୍ୟକ୍ଷ ହୋଇ ପାରିଥିଲେ । ଏହି ଗବେଷଣାଗାରରେ ସେ କ୍ରମଶଃ ଗବେଷଣା କରିବାକୁ ସୁବିଧା ଅଧିକ ପାଇପାରିଲେ । ବିଭିନ୍ନ ଅନୁଷ୍ଠାନ ତରଫରୁ ତାଙ୍କୁ ଭାଷଣମାନ ଦେବା ପାଇଁ ନିମନ୍ତ୍ରଣମାନ ଆସି ପହଞ୍ଚିଲା ।

ବିଶ୍ୱବିଦ୍ୟାଳୟରେ ପାଠ ନ ପଢ଼ି ସୁଦ୍ଧା ତାଙ୍କର ଗବେଷଣା ପାଇଁ ୧୮୧୧ ମସିହାରେ ତାଙ୍କୁ "ଡକ୍ଟର ଅଫ ଲିଟରେଚର" ଉପାଧି ପ୍ରଦାନ କରାଗଲା ।

ୟୁରୋପରେ ଥିବା ଖଣିମାନଙ୍କରେ ପ୍ରତ୍ୟହ ଦୁର୍ଘଟଣା ଘଟୁଥିବାର ଖବର ପ୍ରାୟ ଖବରକାଗଜମାନଙ୍କରେ ପ୍ରକାଶିତ ହେଉଥାଏ । ଏହାକୁ ପଢ଼ି ଡାଭି ଦିନେ ଚିନ୍ତା କଲେ, କ'ଣ କଲେ ଏହି ବିପଦ ଦୂର ହୋଇପାରିବ । ସେ ବହୁ ଅନୁଧ୍ୟାନ କରି ଜାଣିପାରିଲେ ଯେ ଖଣିରେ ବ୍ୟବହୃତ ହେଉଥିବା ଆଲୋକ ଆଦୌ ନିରାପଦ ନୁହେଁ । ଏହି ଆଲୋକକୁ ସାବଧାନ ସହିତ ବ୍ୟବହାର ନ କରିବା ହେତୁ ଏହିଭଳି ଦୁର୍ଘଟଣା ଘଟୁଛି । ଯଦି ଖଣିରେ ବ୍ୟବହୃତ ହେବା ପାଇଁ ଏକ ନିରାପଦ ଆଲୋକ ସୃଷ୍ଟି ହୋଇପାରନ୍ତା, ତେବେ ଏତେ ବିପଦ ଆଉ ଘଟନ୍ତା ନାହିଁ ।

ଡାଭି ଯେତେବେଳେ ଏହି କଥା ଜାଣିପାରିଲେ ସେତେବେଳେ ସେ ନିରାପଦ ଆଲୁଅର ସୃଷ୍ଟି ପାଇଁ ମନୋନିବେଶ କଲେ ।

ସେ ଗବେଷଣା କରି ଉପଲବ୍ଧି କରିପାରିଲେ ଯେ ଏକ ଥଣ୍ଡା ପରିବେଶ ଭିତରେ ଅଳ୍ପ ଅକ୍ସିଜେନ ନେଇ ଯଦି ଗ୍ୟାସ ବତୀକୁ ଏକ ଟ୍ୟୁବ ଭିତରେ ଆବଦ୍ଧ କରାଯାଏ ତେବେ ବିସ୍ଫୋରଣ ଆଦୌ ଘଟିପାରିବ ନାହିଁ । ତାଙ୍କର ଏହି ଗବେଷଣା ଶେଷରେ "ସେଫ୍‌ଟି ଲ୍ୟାମ୍ପ" ବା "ନିରାପଦ ବତୀ"ରେ ରୂପାୟିତ ହୋଇପାରିଲା । ନିରାପଦ ବତୀ ଆବିଷ୍କାର ଫଳରେ ସେ ସମଗ୍ର ବିଶ୍ୱରେ ବନ୍ଦନୀୟ ହୋଇଉଠିଲେ । ବିଶ୍ୱର ପ୍ରତ୍ୟେକ ଦେଶରୁ ଏହି ଆବିଷ୍କାର ପାଇଁ ତାଙ୍କୁ ପ୍ରଚୁର ଧନ ସହ ସମ୍ମାନ ମଧ୍ୟ ମିଳିଥିଲା ।

ସେଫ୍‌ଟି ଲ୍ୟାମ୍ପଟି କିଛି ଦିନ ପରେ ସମସ୍ତ ଶ୍ରମିକଙ୍କ ବ୍ୟବହାର ପାଇଁ ବଜାରକୁ ବିକ୍ରି ପାଇଁ ଛଡ଼ାଗଲା । ଏହି ବତୀଟି ଦେଖି-ବାକୁ ଠିକ୍ ଏକ ଲଣ୍ଠନ ପରି । କାଚ ବଦଳରେ ବତୀର ଶିଖାକୁ ଏକ ତାର ଜାଲରେ ଘେରି ହୋଇଥାଏ । ତାର ଜାଲର ଏକ ବର୍ଗଇଞ୍ଚ ମଧ୍ୟରେ ସାତୋଟି ରନ୍ଧ୍ର ଥାଏ । ବତୀର ତାପ ତାର ଜାଲି ଦେଇ ବାହାରକୁ ଆସ୍ତେ ଆସ୍ତେ ବିକୀର୍ଣ୍ଣ ହୁଏ । ଖଣି ଭିତରେ ଥିବା ମିଥେନ୍ ଗ୍ୟାସ ଏହି ବତୀକୁ ସ୍ପର୍ଶ କରି ପାରୁ ନ ଥିବାରୁ ବିସ୍ଫୋରଣର ଆଶଙ୍କା ଦୂରୀଭୂତ ହେଲା ।

ବ୍ରିଟେନ ଏବଂ ଫ୍ରାନ୍‌ସର ସେତେବେଳେ ବୈରିତା ଥିଲେ ମଧ୍ୟ ଗୁଣୀଜନଙ୍କୁ ଆଦର କରିବା ଉଦ୍ଦେଶ୍ୟରେ ଫ୍ରାନ୍‌ସ ସରକାର ହାମ୍ଫ୍ରିଙ୍କୁ ଫ୍ରାନ୍‌ସ ଯିବା ପାଇଁ ନିମନ୍ତ୍ରଣ ଜଣାଇଲେ । ଡାଭି ଏହାକୁ ସାଦରେ ଗ୍ରହଣ କଲେ । ସେଠାରେ ପହଞ୍ଚିବା ପରେ ଫ୍ରାନ୍‌ସ ସରକାର ତାଙ୍କୁ ତିନି ହଜାର ଫ୍ରାଙ୍କ୍ ମୁଦ୍ରା ଅର୍ପଣ କରିଥିଲେ ।

ଫ୍ରାନ୍‌ସ ଦେଶରେ ନିଜକୁ ସେ ସୁସ୍ଥ ମନେ କରି ନ ପାରିବାରୁ ଶୀଘ୍ର ବ୍ରିଟେନ ଫେରିଆସିଲେ । ୧୮୦୭ ମସିହାରେ ସେ ପୋଟାସିୟମ୍ ଓ ସୋଡ଼ିୟମ ଧାତୁ ଦୁଇଟି ଆବିଷ୍କାର କଲେ ।

ବିଜ୍ଞାନ ଜଗତରେ ତାଙ୍କର ଅସାମାନ୍ୟ ସାଫଲ୍ୟ ପାଇଁ ୧୮୧୨ ଖ୍ରୀ:ଅ:ରେ ତାଙ୍କୁ ବିଲାତର ଶ୍ରେଷ୍ଠ ସମ୍ମାନ "ନାଇଟ୍" ଉପାଧିରେ ଭୂଷିତ କରାଗଲା ।

ମଣିଷ ଜାତିର ସେବା ପାଇଁ ବିଜ୍ଞାନକୁ ନିୟୋଜିତ କରିଥିବା ଏହି ବୈଜ୍ଞାନିକ ଯେ କି ଇଂଲଣ୍ଡର ପେଞ୍ଜାନ୍ସ ସହରରେ ୧୭୭୮ ମସିହାରେ ଗୋଟିଏ ଗରିବ ପରିବାରରେ ଜନ୍ମ ହୋଇଥିଲେ, ସେ ୧୮୨୯ ମସିହାରେ ପୃଥିବୀର ସବୁ ଦେଶରୁ ସମ୍ମାନ ପାଇ ଜଣେ ଧନୀମାନୀ ବୈଜ୍ଞାନିକ ରୂପେ ଯଶ ଅର୍ଜନ କରି ଇହଧାମ ତ୍ୟାଗ କରିଥିଲେ ।

ଖଣିମାନଙ୍କ ଭିତରୁ କୋଇଲା ସେତେଦିନ ପର୍ଯ୍ୟନ୍ତ ସଂଗ୍ରହ ଚାଲିଥିବ ହାମ୍ଫ୍ରି ଡେଭି ମରିଯାଇଥିଲେ ମଧ୍ୟ ଆମମାନଙ୍କ ଭିତରେ ବଞ୍ଚି ରହିଥିବେ ।



# ଆଲ୍‌ଫ୍ରେଡ଼ ନୋବେଲ

( ୧୮୩୩—୧୮୯୬ )

'ନୋବେଲ'—ଏଇ ତିନିଗୋଟି ଅକ୍ଷର ଯେତେବେଳେ ଏକାସି ମିଶି ଉଚ୍ଚାରିତ ହୁଅନ୍ତି ସେତେବେଳେ ଆଜିକାଲି ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ନୋବେଲ ପ୍ରାଇଜ କଥା ମନକୁ ଆଣନ୍ତି । କିନ୍ତୁ ଅଧିକାଂଶ ଗୁଣ ଓ ଯୁବକଙ୍କୁ ଯଦି ପଚରାଯାଏ ଏହି ନୋବେଲ ପୁରସ୍କାର କିଏ ସୃଷ୍ଟି କରିଥିଲେ ? ତାଙ୍କ ଘର କେଉଁଠି ? ସେ କ'ଣ କରୁଥିଲେ ? ଆଜି ନୋବେଲ ପୁରସ୍କାର ପ୍ରଦତ୍ତ ହେବାର 'ସର୍ତ୍ତ ବା ନିୟମ କ'ଣ ତେବେ ଦେଖାଯିବ ସମସ୍ତେ ନୀରବ ।

ଏହି ନୋବେଲ ପୁରସ୍କାର ଯାହାକି ସମଗ୍ର ବିଶ୍ୱରେ ଏକ ସମ୍ମାନଜନକ ଗୌରବ ବୋଲି ଗୃହୀତ ହୋଇ ଆସୁଅଛି ତାହାକୁ ସୃଷ୍ଟି କରିଥିଲେ ଆଲ୍‌ଫ୍ରେଡ଼ ବର୍ଣ୍ଣହାମ୍ ନୋବେଲ । ସେ ଏହି ପୁରସ୍କାର କାହିଁକି ଓ କିପରି ସୃଷ୍ଟି କଲେ ଏବଂ ସେ କ'ଣ କରୁଥିଲେ ତାହା ତ ନିମ୍ନରେ ଦିଆଯିବ; କିନ୍ତୁ ଏହି ନୋବେଲ ପୁରସ୍କାର ବିଷୟରେ ଆଗ ଦୁଇ ଧାରି ପଦ ଲେଖିଦେବା ଉଚିତ ହେବ ବୋଲି ମନେ କରୁଛୁ ।

ଆଲଫ୍ରେଡ଼ ନୋବେଲ ବିବାହ କରି ନ ଥିଲେ । ତେଣୁ ସେ ତାଙ୍କର ଅର୍ଜିତ ବିପୁଳ ସମ୍ପତ୍ତିକୁ ସମଗ୍ର ବିଶ୍ୱର କଲ୍ୟାଣ ପାଇଁ ଏକ ଟ୍ରଷ୍ଟ ହାତରେ ସମର୍ପଣ କରି ଦେଇଗଲେ । ଏହି ଗଚ୍ଛିତ ପାଣ୍ଠିର ସୁଧରୁ ପ୍ରତିବର୍ଷ ପଦାର୍ଥ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ରସାୟନ ବିଜ୍ଞାନ, ସାହିତ୍ୟ ଏବଂ ଶାନ୍ତି ଉପରେ ସମଗ୍ର ପୃଥିବୀର ଶ୍ରେଷ୍ଠ ମନୀଷୀମାନଙ୍କୁ ଏ ପୁରସ୍କାର ଦିଆଯାଇଥାଏ । ଏହି ପୁରସ୍କାର ପାଇବା ପାଇଁ କାହା ଭିତରେ ପ୍ରତିଯୋଗିତା ହୁଏ ନାହିଁ । ବିଭିନ୍ନ ବିଭାଗ ପାଇଁ ପୃଥିବୀର ବିଭିନ୍ନ ଅନୁଷ୍ଠାନ ଉପରେ ଦାୟିତ୍ୱ ଦିଆଯାଇଥାଏ । ସେମାନେ ସେହି ଅନୁସାରେ ସମଗ୍ର ବିଶ୍ୱରୁ ଯୋଗ୍ୟ ବ୍ୟକ୍ତିଙ୍କୁ ବିବେଚିତ କରନ୍ତି ।

ପାଞ୍ଚଟି ବିଭାଗ ଭିତରୁ କେବଳ 'ଶାନ୍ତି' ଏହି ବିଭାଗରେ ସବୁ ବର୍ଷ ପୁରସ୍କାର ଦେବା ସମ୍ଭବପର ହୋଇପାରେ ନାହିଁ । ତାର କାରଣ ହେଉଛି ଉପଯୁକ୍ତ ବ୍ୟକ୍ତିଙ୍କର ଅଭାବ । ଯଦି କୌଣସି ବିଷୟରେ ଦୁଇ ଜଣ ସମଯୋଗ୍ୟତାସମ୍ପନ୍ନ ବ୍ୟକ୍ତି ବଛାଯାଆନ୍ତି, ତେବେ ଏହି ପୁରସ୍କାର ସେମାନଙ୍କ ଭିତରେ ସମାନ ଭାବରେ ବାଣ୍ଟି ଦିଆଯାଏ । ପ୍ରତ୍ୟେକ ପୁରସ୍କାରର ମୂଲ୍ୟ ଆମ ଭାରତୀୟ ମୁଦ୍ରାରେ ଦେଢ଼ଲକ୍ଷ ଟଙ୍କା ହେବ । ଆମ ଭାରତବର୍ଷରୁ ଏପର୍ଯ୍ୟନ୍ତ ଦୁଇଜଣ ମନୀଷୀ ଏହି ପୁରସ୍କାର ପାଇଛନ୍ତି । ସେମାନେ ହେଲେ ସାହିତ୍ୟ କ୍ଷେତ୍ରରେ କବିଗୁରୁ ରବୀନ୍ଦ୍ରନାଥ ତାଙ୍କର "ଗୀତାଞ୍ଜଳି" ପୁସ୍ତକ ଏବଂ ବୈଜ୍ଞାନିକ ସାର ସି. ଭି ରମଣ ତାଙ୍କର "ଆଲୋକରଶ୍ମିର ବିଚ୍ଛୁରଣ" ତଥ୍ୟ ଯାହାକି ବିଜ୍ଞାନ ଜଗତରେ "ରମଣରଶ୍ମି" ନାମରେ ସୁବିଦିତ ପାଇଁ ପାଇପାରିଥିଲେ ।

ନୋବେଲ ପୁରସ୍କାରର ସୃଷ୍ଟିକର୍ତ୍ତା, ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଲଫ୍ରେଡ୍ ବର୍ଣ୍ଣହାମ୍ ନୋବେଲ ସୁଇଡେନ ଦେଶର ଷ୍ଟୋକହୋମ

ସହରରେ ୧୮୩୩ ମସିହା ଅକ୍ଟୋବର ମାସ ଏକୋଇଶି ତାରିଖ ଦିନ ଜନ୍ମଗ୍ରହଣ କରିଥିଲେ । ନୋବେଲ ପିଲାଦିନେ ଖୁବ ରୁଗ୍‌ଣ ଏବଂ ଦୁର୍ବଳ ଥିଲେ । ତେଣୁ ତାଙ୍କର ବାଲ୍ୟ ଶିକ୍ଷା ଘରୋଇ ଶିକ୍ଷକଙ୍କ ତତ୍ତ୍ୱା-ବଧାନରେ ଆରମ୍ଭ ହୋଇଥିଲା । ନୋବେଲଙ୍କ ପିତାଙ୍କର ଏକ ଟର୍ପେଡୋ କାରଖାନା ଥିଲା । ଟର୍ପେଡୋ ହେଉଛି ବାରୁଦଦ୍ୱାରା ଗୃଳିତ ଏକ ଅସ୍ତ୍ର ଯାହା କି ଜଳଜାହାଜସବୁ ଧ୍ୱଂସ କରିବାରେ ବ୍ୟବହୃତ ହୁଏ । ତେଣୁ ତାଙ୍କ ପିତାଙ୍କର ଆର୍ଥିକ ଅବସ୍ଥା ସଚ୍ଛଳ ଥିଲା ।

ବାଲ୍ୟ ଶିକ୍ଷା ପରେ ପରେ ନୋବେଲଙ୍କର ଇଂଜିନିୟରିଂ ଏବଂ ରସାୟନ ବିଦ୍ୟା ପଢ଼ିବାକୁ ଆଗ୍ରହ ଥିବାର ଲକ୍ଷ୍ୟ କରି ତାଙ୍କର ପିତା ତାଙ୍କୁ ଯୁକ୍ତରାଷ୍ଟ୍ର ଆମେରିକାକୁ ପଢ଼ିବାକୁ ପଠାଇଥିଲେ । ପିଲାଦିନରୁ ବାପାଙ୍କର ବାରୁଦ ଅସ୍ତ୍ର ତିଆରି କାରଖାନା ତାଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇ ପାରିଥିଲା । ତେଣୁ ରସାୟନ ବିଦ୍ୟାର ଗବେଷଣାରେ ସେ ଅଧିକ ମନଯୋଗୀ ହୋଇପାରିଲେ ।

ଯୁକ୍ତରାଷ୍ଟ୍ର ପରେ ସେ ରୁଷିଆ ମଧ୍ୟ ପଢ଼ିବାକୁ ଗଲେ । ରସାୟନ ବିଦ୍ୟାରେ ସେ ସମଧିକ ଜ୍ଞାନ ଲାଭ କରି ନିଜ ଦେଶକୁ ଫେରିଆସିଲେ । ପିତାଙ୍କ ପୃଷ୍ଠପୋଷକତାରେ ଏକ ଗବେଷଣାଗାର ପ୍ରସ୍ତୁତ କରି ସେ ରସାୟନ ବିଜ୍ଞାନ ଉପରେ ତାଙ୍କର ଗବେଷଣା ଆରମ୍ଭ କଲେ । ଏକାଗ୍ରତା ଏବଂ ଅଧ୍ୟବସାୟ ଫଳରେ ସେ କିସେଲଗୁର ନାମକ ପଥୁରିଆ ବାଲି କଣା ସହିତ ନାଇଟ୍ରୋ ଗ୍ଲିସରେନ୍ ନାମକ ଏକ ତରଳ ବିସ୍ଫୋରକ ଦ୍ରବ୍ୟକୁ ମିଶ୍ରଣ କରାଇ "ଡିନାମାଇଟ୍" ପ୍ରସ୍ତୁତ କଲେ ।

ଆଜିକାଲି କୋଇଲାଖଣି ଏବଂ ପାହାଡ଼ ପଥରକୁ ଭାଙ୍ଗିବା ପାଇଁ ଏହି ଡିନାମାଇଟର ଉପାଦେୟତା କେତେ ତାହା ସମସ୍ତେ ଜାଣନ୍ତି । ଏହି

ଡିନାମାଇଟ୍‌କୁ ସେ ଇଂଲଣ୍ଡ ଏବଂ ଆମେରିକାକୁ ବିକ୍ରୟ କରି ପ୍ରଚୁର ଅର୍ଥ ଲାଭ କଲେ । କ୍ରମେକ୍ରମେ ତାଙ୍କର ଗବେଷଣାଗାର ଏକ ବିରାଟ କାରଖାନାରେ ପରିଣତ ହେଲା ।

ନୋବେଲଙ୍କର ଏହି ଆବିଷ୍କାର ହେତୁ ତାହାଙ୍କ ପ୍ରତି ସମଗ୍ର ବିଜ୍ଞାନ ଜଗତର ଦୃଷ୍ଟି ଆକର୍ଷିତ ହେବାକୁ ଲାଗିଲା । ଦେଶ ବିଦେଶରୁ ପ୍ରଶଂସାପତ୍ରମାନ ତାଙ୍କ ଟେବୁଲ ଉପରେ ଆସି ଗଦା ହେବାକୁ ଲାଗିଲା । ଏହା ତାଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇ ଦେଇପାରିଥିଲା । ସେ ଅଧିକ ଗବେଷଣାରେ ମନୋନିବେଶ କରିବାକୁ ଲାଗିଲେ ।

ଡିନାମାଇଟର ଆବିଷ୍କାର ପରେ ପରେ ଦୀର୍ଘ ଦଶ ବର୍ଷ ପରେ ୧୮୭୬ ଖ୍ରୀ:ଅ:ରେ ସେ ବ୍ଲାସଟିଂ ଜିଲେଟିନ ନାମକ ଏକ ସହଜସାଧ ବିସ୍ଫୋରକ ଆବିଷ୍କାର କଲେ । ସମଗ୍ର ପୃଥିବୀର ବିଭିନ୍ନ ଦେଶରେ ଏହି ବିସ୍ଫୋରକ ଦ୍ରବ୍ୟର ଏତେ ଚାହିଦା ବଢ଼ିବାକୁ ଲାଗିଲା ଯେ ନୋବେଲ ସମୟ ସମୟରେ ଏହାକୁ ନିୟମିତ ଯୋଗାଇ ନ ପାରି ଅସ୍ଥିର ହୋଇ ପଡ଼ୁଥିଲେ ।

ନୋବେଲ ଆସ୍ତେ ଆସ୍ତେ ଭଗବାନଙ୍କ କୃପାରୁ ଲକ୍ଷ୍ମୀଙ୍କର ବରପୁତ୍ର ହୋଇଉଠିଲେ । ନିଜେ ତ ବାହା ହୋଇ ନ ଥିଲେ, ତେଣୁ ଖର୍ଚ୍ଚ ମଧ୍ୟ ସୀମିତ ଥିଲା । ପ୍ରଚୁର ଅର୍ଥର ଅଧିକାରୀ ହୋଇ ସୁଦ୍ଧା ସେ କୃପଣ ନ ଥିଲେ । ତାହାଙ୍କ ହାତରୁ କେହି କେବେ ଖାଲି ହାତରେ ଫେରୁ ନ ଥିଲା । ତାହାଙ୍କର ବଦାନ୍ୟତା ଗୁଣ ପାଇଁ ସେ ସର୍ବ-ସାଧାରଣରେ ବିଶେଷ ଆଦୃତ ହେଉଥିଲେ ।

ମାନବ ଜାତି ଯେତେବେଳେ ମାନବର କଲ୍ୟାଣ ନିମିତ୍ତ ସେ ଆବିଷ୍କାର କରିଥିବା ଡିନାମାଇଟ୍ ଏବଂ ବ୍ଲାସ୍‌ଟିଂ ଜିଲେଟିନକୁ ଯୁଦ୍ଧରେ

ମାରଣାସ୍ତ୍ର ରୂପେ ବ୍ୟବହାର କଲ, ସେତେବେଳେ ନୋବେଲ ବଡ଼ ମର୍ମାହତ ହୋଇପଡ଼ିଲେ । ସମଗ୍ର ମାନବ ଜାତି ପ୍ରତି ବିତୃଷ୍ଣା ଭାବ ତାଙ୍କ ମନରେ ଜାଗିଉଠିଲା ।

ତାଙ୍କର ପ୍ରଚୁର ଅର୍ଥ ତାଙ୍କର ଚିନ୍ତାର ବିଷୟ ହୋଇପଡ଼ିଲା । ଏହି ଅର୍ଥର ସଦୁପଯୋଗ ପାଇଁ ନୋବେଲ ଉପାୟମାନ ଭାବିବାକୁ ଲାଗିଲେ । ଶେଷରେ ନୋବେଲ ଫାଉଣ୍ଡେସନ ନାମକ ଏକ ଟ୍ରଷ୍ଟ ଗଢ଼ି ତାହାର ହାତରେ ତାଙ୍କର ସମସ୍ତ ସମ୍ପତ୍ତିକୁ ବିଶ୍ୱର କଲ୍ୟାଣ ପାଇଁ ଉତ୍ସର୍ଗ କରିଗଲେ ।

୧୮୯୬ ମସିହାରେ ଇଟାଲି ଦେଶର ସନ୍‌ରେମୋ ସହରଠାରେ ପୃଥିବୀର ଶ୍ରେଷ୍ଠ ବଦାନ୍ୟ ବୈଜ୍ଞାନିକଙ୍କର ଦେହାନ୍ତ ହୋଇଥିଲା ।



# ଟମାସ୍ ଆଲଭା ଏଡ଼ିସନ୍

( ୧୮୪୭—୧୯୩୧ )

ଷ୍ଟେସନମାନଙ୍କରେ ଖବର କାଗଜ ବୁଲି ବିକ୍ରୟ କରୁଥିବା ପିଲା ଦିନେ ବୈଜ୍ଞାନିକ ହୋଇପାରିବ, ଏକଥା କେହି କେବେ କ'ଣ କଳ୍ପନା କରିପାରିବେ ? ସ୍କୁଲକୁ ପୂଜା ନେଇ ନାହିଁ, ନିଜ ଗୋଡ଼ରେ ନିଜେ ଠିଆ ହୋଇ ଯେ ଏହିଭଳି ଜ୍ଞାନୀ ହୋଇପାରିଲେ, ସେ ହେଉଛନ୍ତି ଟମାସ୍ ଆଲଭା ଏଡ଼ିସନ୍ । ଜଣେ ଶିକ୍ଷୟିତ୍ରୀଙ୍କ କୋଳରେ ଯୁକ୍ତରାଷ୍ଟ୍ର ଆମେରିକାର ଓହିଓ ଷ୍ଟେଟ ଅନ୍ତର୍ଗତ ମିଲାନ୍ ନାମକ ସହରରେ ୧୮୪୭ ମସିହାର ଫେବୃଆରି ଏଗାର ତାରିଖ ଦିନ ସେ ଜନ୍ମ ଗ୍ରହଣ କରିଥିଲେ ।

ଆଶ୍ଚର୍ଯ୍ୟ ଲାଗେ ମାତା ଜଣେ ଶିକ୍ଷୟିତ୍ରୀ ଅଥଚ ପୁଅ ସ୍କୁଲରେ ପାଠ ପଢ଼ି ପାରିଲା ନାହିଁ ! ଏହାର କାରଣ କ'ଣ ? ପିଲାଦିନରୁ ଏଡ଼ିସନ୍ ସବୁ ବିଷୟ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରି ଏତେ ପ୍ରଶ୍ନମାନ ପଚାରୁଥିଲେ ଯେ ସ୍କୁଲର ଶିକ୍ଷକମାନେ କ'ଣ ଦିଜର ଜନ୍ମ କଲ ମାଆ ମଧ୍ୟ ବିରକ୍ତ ହୋଇ ପଡ଼ୁଥିଲେ । ବାଧ୍ୟ ହୋଇ ତାଙ୍କୁ ସ୍କୁଲରୁ ବିଦାୟ କରି ଦିଆଗଲା । ସେ ଘରେ ପାଠ ପଢ଼ା ଆରମ୍ଭ କଲେ ।

ମାଆ ଦେଖିଲେ ପୁଅ ତାଙ୍କର ଏପରି ମେଧାଶକ୍ତି ଯେ ଯାହା ଥରେ ପଢ଼ୁଛନ୍ତି ତାକୁ ମନେ ରଖି ପକାଉଛନ୍ତି । ବାର ବର୍ଷ ବେଳକୁ ସେ ଅଧିକାଂଶ ପୁସ୍ତକ ଆୟତ୍ତ କରି ସାରିଲେଣି । ବିଜ୍ଞାନ ପାଠ ପଢ଼ା ଆରମ୍ଭ କଲେ ଓ ପରୀକ୍ଷା ସଙ୍ଗେ ସଙ୍ଗେ ଚାଲିଲା । ବୈଜ୍ଞାନିକ ପରୀକ୍ଷା ପାଇଁ ଘରେ ସମ୍ବଳ ନାହିଁ । ମାଆ ଯାହା ଅର୍ଜନ କରନ୍ତି, ମାଆ ପୁଅ ଦୁହିଁଙ୍କୁ ଯଥେଷ୍ଟ ହୁଏ ନାହିଁ ।

ଉଦ୍ୟମୀ ବାଳକ ଏଡ଼ିସନ୍ କିନ୍ତୁ ନିଜ ପାଇଁ ନିଜେ ପନ୍ଥା ବାଛିନେଲେ । ପିଲାଦିନେ ଅବଶ୍ୟ ଟିକିଏ ଚପଳ ଥିଲେ । ସେତେବେଳେ ହ୍ୟୁରେନ୍ ଏବଂ ଡେଟ୍ରଏଟ୍ ଭିତରେ ଗୋଟିଏ ରେଳଗାଡ଼ି ଚାଲୁଥାଏ । ଏଡ଼ିସନ୍ ଏହି ଟ୍ରେନରେ ଖବର କାଗଜରେ ହକର ସାଜିଲେ । ଖବର କାଗଜ ବିକି ଯାହା ମିଳିଲା ସେତିକିରେ ନିଜର ବିଜ୍ଞାନ ପରୀକ୍ଷାରେ ଚଳାଇଲେ ।

ହ୍ୟୁରେନ୍‌ରୁ ଗାଡ଼ି ଯାଇ ଡେଟ୍ରଏଟ୍‌ରେ ପହଞ୍ଚି କିଛି ସମୟ ଅଟକି ରହେ । ଗାଡ଼ି ଡେଟ୍ରଏଟ୍‌ରୁ ପୁଣି ହ୍ୟୁରେନ୍ ଅଭିମୁଖରେ ଓଲଟା ଯାତ୍ରା ଆରମ୍ଭ କରିବା ଭିତରେ ଯେଉଁ ସମୟ ମିଳେ ସେତିକି ସମୟ ଭିତରେ ଡେଟ୍ରଏଟ୍‌ଠାରେ ଥିବା ଲାଇବ୍ରେରୀରେ ଏଡ଼ିସନ୍ ପଢ଼ିବାକୁ ବସିଯାଉଥିଲେ ।

ପାଠ ପଢ଼ିବାକୁ ଏକଦମ୍ ପାଗଳ, ବିନା ଗୁରୁରେ ସେ ମଣିଷ ହେବେ ଏଇ ତାଙ୍କର ଯେପରି ଦୃଢ଼ ପ୍ରତିଜ୍ଞା ଥିଲା ।

ଖବର କାଗଜ ବିକିରୁ ଯେତିକି ପଇସା ଲାଭ ମିଳେ ସେତିକିରେ ବୈଜ୍ଞାନିକ ଗବେଷଣା କରିବା ଯେତେବେଳେ ଅସମ୍ଭବ ହୋଇପଡ଼ିଲା ତାଙ୍କ ମୁଣ୍ଡକୁ ଗୋଟିଏ ବୁଦ୍ଧି ଜୁଟିଲା । ସେ ଗୋଟିଏ ପ୍ରେସ କିଣିଲେ ଏବଂ ଗୋଟିଏ ସାପ୍ତାହିକ କାଗଜ ପ୍ରକାଶ କଲେ । ଏହି ସାପ୍ତାହିକ ଖବର

କାଗଜର ସମ୍ପାଦକ, ପ୍ରକାଶକ, ମୁଦ୍ରାକର ଏବଂ ହକର୍ ନିଜେ ଏଡ଼ିସନ୍ ହେଲେ । ସବୁଠାରୁ ମଜାକଥା, ପ୍ରେସଟିକୁ ସେହି ରେଳଗାଡ଼ିର ଗୋଟିଏ ଡବାରେ ସେ ସ୍ଥାପନ କରିଥିଲେ । ସେହି ଡବାରେ ଖବର କାଗଜ ଛାପିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ଗବେଷଣା ପାଇଁ ପରୀକ୍ଷା ମଧ୍ୟ ଚଳାଇ-ଥାନ୍ତି ।

ଦୁର୍ଭାଗ୍ୟକୁ ଦିନେ ରାସାୟନିକ ପଦାର୍ଥର ସମିଶ୍ରଣରେ ଏକ ବିସ୍ଫୋରଣ ଘଟିବାରୁ ତାଙ୍କର ପ୍ରେସ, କାଗଜ ସହିତ ରେଳ ଡବାର କେତେକ ଅଂଶ ପୋଡ଼ିଗଲା । ଏହି ଦୁର୍ଘଟଣା ସମ୍ବାଦ ରେଳବାଇର କର୍ତ୍ତୃପକ୍ଷ ପାଇବା ମାତ୍ରେ ତାଙ୍କୁ ରେଳଗାଡ଼ିରୁ ସଙ୍ଗେ ସଙ୍ଗେ ବାହାର କରି ଦେଇଥିଲେ ।

ମଣିଷ ଜୀବନରେ କେବେ କେବେ ଏହିପରି ସମୟ ଆସେ । ଭଗବାନ ସେତିକିବେଳେ ମଣିଷକୁ ପରୀକ୍ଷା କରିବାକୁ ବସନ୍ତି । ଉଦ୍ୟମୀ ଯୁବକ ରେଳଗାଡ଼ିରୁ ବିତାଡ଼ିତ ହେବା ପରେ କ'ଣ କରିବେ ବୋଲି କିଛି ସ୍ଥିର କରିପାରୁ ନ ଥାନ୍ତି । ତେଣୁ ଚିନ୍ତାରେ ଅଧିକାଂଶ ସମୟ ସେ ଏଣେତେଣେ ବୁଲୁଥାନ୍ତି । ଦିନେ ସେ ଷ୍ଟେସନର ପ୍ଲାଟଫର୍ମରେ ବୁଲୁଥିବା ସମୟରେ ଦେଖିଲେ ଯେ ରେଲ ଧାରଣା ଉପରେ ଖେଳୁଥିବା ଗୋଟିଏ ଛୋଟ ପିଲା ଷ୍ଟେସନ ଭିତରକୁ ପଶିଆସୁଥିବା ଦ୍ରୁତଗାମୀ ରେଳଗାଡ଼ି ଚକ ତଳେ ନିମିଷକେ ପେଷି ହୋଇଯିବ । ଏଡ଼ିସନ୍ ନିଜ ଜୀବନକୁ ପାଣି ଛଡ଼ାଇ ରେଳ ଧାରଣା ଉପରୁ ପିଲାଟିକୁ ନେଇଆସିଲେ । ଏହି ଛୋଟ ପିଲାଟି ସେହି ଷ୍ଟେସନର ଷ୍ଟେସନ ମାଷ୍ଟରଙ୍କର ଏକମାତ୍ର ପୁତ୍ର ଥିଲା ।

ଏଡ଼ିସନଙ୍କର ଏହି ଉପକାର ପାଇଁ ଷ୍ଟେସନମାଷ୍ଟର ଏତେ କୃତଜ୍ଞ ହୋଇଉଠିଲେ ଯେ ତାହାଙ୍କୁ ଟେଲିଗ୍ରାଫିକ୍ ଶିଖାଇଲେ ।

ପିଲାଦିନରୁ ତ ଭଗବାନ ତାଙ୍କୁ ଏକ ଶକ୍ତି ଦେଇଛନ୍ତି ଯେ ସେ ଯାହା ପଢ଼ିବେ ବା ଶିଖିବେ ତାହା ସଙ୍ଗେ ସଙ୍ଗେ ମନେ ରଖିବେ । ତେଣୁ ଅଳ୍ପଦିନ ଭିତରେ ସେ ଜଣେ ଭଲ ଟେଲିଗ୍ରାଫ ଅପରେଟର ନାମରେ ସୁନାମ ଅର୍ଜିଲେ ।

ସଦାବେଳେ ଖୁଟ୍ ଖାଟ୍ କରି କିଛି ନା କିଛି ପରୀକ୍ଷା କରିବାରେ ବ୍ୟସ୍ତ ରହିବା ଯାହାର ପ୍ରକୃତି ସେ କ'ଣ ଏତିକରେ ସନ୍ତୁଷ୍ଟ ହୋଇ ରହି-ପାରିବ ? ଏଇ ଟେଲିଗ୍ରାଫ୍ ଅପରେଟର ଭାବରେ ସେ କିଛି ପଇସା ଅବଶ୍ୟ ଅର୍ଜନ କଲେ । ଏହା ପରେ ସେ ଅଧିକ ଜ୍ଞାନ ଅର୍ଜନ କରିବାକୁ ନ୍ୟୁୟର୍କ ସହରକୁ ଆସିଲେ ।

ନ୍ୟୁୟର୍କ ସହରରେ ପହଞ୍ଚିବା ପରେ ପରେ କୌଣସି କାମ ହଠାତ୍ ପାଇ ନ ପାରି ଯୁବକ ଏଡ଼ିସନଙ୍କ ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ-ପଡ଼ିଲା । ଏପରି କି ତାଙ୍କର ପିନ୍ଧିବାକୁ ଭଲ ପୋଷାକ ମଧ୍ୟ ନ ଥିଲା । ହୋଟେଲରେ ପଇସା ଦେଇ ରହିବାକୁ ତାଙ୍କର ସମ୍ବଳ ନ ଥିଲା । ଯାହା ଗଣ୍ଡେ ଖାଇଦେଇ ସେ ଯାହା ପିଣ୍ଡାରେ ଶୋଇ ପଡ଼ୁଥିଲେ ।

ଦିନେ ରାତିରେ ଗୋଟିଏ କମ୍ପାନୀର କାରଖାନା ବାରଣ୍ଡାରେ ଶୋଇଥିବା ସମୟରେ ଶୁଣିଲେ ସେହି କମ୍ପାନୀର କୌଣସି କଳ ଖରାପ ହୋଇଯାଇଥିବାରୁ କମ୍ପାନୀର ମାଲିକ ବଡ଼ ବିବ୍ରତ ହୋଇ ପଡ଼ିଛନ୍ତି । ଏଡ଼ିସନ ନିଜର ପରିଚୟ ଦେବା ସଙ୍ଗେ ସଙ୍ଗେ ଏହି ଯନ୍ତ୍ରଟି ସଜାଡ଼ି ଦେଇ-ପାରିବେ ବୋଲି ଜଣାଇଲେ ।

କମ୍ପାନୀର ମାଲିକ ତ ଆଶାଶୂନ୍ୟ ହୋଇ ପଡ଼ିଥିଲେ । ଏଡ଼ିସନଙ୍କ କଥାରେ ଯଦିଓ ତାଙ୍କର ବିଶ୍ୱାସ ହେଲା ନାହିଁ, ତଥାପି ଆଶାକଲେ କାଳେ ହୁଏତ ସଜାଡ଼ି ଦେଇପାରେ । ତେଣୁ ସେ ଏଡ଼ିସନଙ୍କୁ ସେ କଳଟି ସଜାଡ଼ି ଦେବାକୁ ଅନୁମତି ଦେଲେ । ଏଡ଼ିସନ୍ ତାଙ୍କର

ବୁଦ୍ଧି ବଳରେ ଅନେକ ପରିଶ୍ରମ କରି କଳଟି ସଜାଡ଼ି ଦେଇପାରିଲେ । କମ୍ପାନିର ମାଲିକଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଏତେ ଖୁସି ହୋଇଯାଇଥିଲେ ଯେ ସଙ୍ଗେ ସଙ୍ଗେ ଏଡ଼ିସନଙ୍କୁ ମାସିକ ତିନି ଶହ ଡଲାର ଦରମାରେ ତାଙ୍କ କାରଖାନାରେ ଫୋରମ୍ୟାନ୍ ରୂପେ ନିଯୁକ୍ତ ଦେଲେ ।

ଅବିବାହିତ ଯୁବକ ଏଡ଼ିସନଙ୍କ ହାତରେ ମାସିକ ତିନି ଶହ ଡଲାର ପଡ଼ିବା ପରେ ସେ ସଞ୍ଚୟ କରିବା ଆରମ୍ଭ କଲେ ଏବଂ ବର୍ଷ କେତୋଟା ପରେ କ୍ରମଶଃ ଧନୀ ହେବାକୁ ଲାଗିଲେ । ଏହାପରେ ଆଉ ଚାକିରୀ କରିବାକୁ ତାଙ୍କୁ ଭଲ ଲାଗିଲା ନାହିଁ । ସେ ଚାକିରୀରୁ ଇସ୍ତଫା ଦେଇ ନିୟୁର୍କରୁ ପୁଣି ମିଲାନ୍ ସହରକୁ ଚାଲିଆସିଲେ ।

ମିଲାନ୍ ସହରରେ ପହଞ୍ଚି ସେ ଏକ ଗବେଷଣାଗାର ଗଢ଼ିଲେ । ଏହି ଗବେଷଣାଗାରରେ କେବଳ ଶିଳ୍ପ ସମ୍ବନ୍ଧୀୟ ଗବେଷଣା ଚାଲିଲା । ପ୍ରତି ଦଶ ଦିନରେ ଗୋଟିଏ ଗୋଟିଏ ନୂଆ ଜିନିଷ ଉଦ୍ଭାବନର ଲକ୍ଷ୍ୟ ରଖି ସେ କାର୍ଯ୍ୟ ଆରମ୍ଭ କଲେ । ସେ ଏତେ ନୂଆ ନୂଆ ଜିନିଷମାନ ଉଦ୍ଭାବନ କଲେ ଯେ ଶେଷରେ ଲୋକମାନେ ତାଙ୍କୁ ମିଲାନର ଯାଦୁକର ବୋଲି କହିବାକୁ ଲାଗିଲେ ।

ଏହି ସମୟରେ ଏଡ଼ିସନ ବିବାହ କଲେ ଏବଂ ସଂସାରୀ ହେଲେ । ଅନେକଗୁଡ଼ିଏ ଜିନିଷ ଉଦ୍ଭାବନ କରିଥିବାରୁ ପ୍ରଚୁର ଅର୍ଥ ମଧ୍ୟ ସେ ପାଇ ପାରିଥିଲେ ।

୧୮୭୮ ମସିହାରେ ମାତ୍ର ତିରିଶ ବର୍ଷ ବୟସରେ ସେ ଇଲେକ୍‌ଟ୍ରିକ ଲାଇଟ ଉଦ୍ଭାବନ କଲେ । ତାହା ପୂର୍ବରୁ ଲଣ୍ଡନରେ ତେଲ ଭରି ସମସ୍ତେ ବ୍ୟବହାର କରୁଥିଲେ । କିନ୍ତୁ ଇଲେକ୍‌ଟ୍ରିକ ବଲ୍‌ବ

ଉଦ୍ଭାବନ କରିବା ସଙ୍ଗେ ସଙ୍ଗେ ଇଲେକ୍‌ଟ୍ରିକ୍‌ଚାଳିତ ବହୁ ଯନ୍ତ୍ରପାତି ସେ ଉଦ୍ଭାବନ କଲେ ।

ଏଇ ଇଲେକ୍‌ଟ୍ରିକ୍ ବତି ଉଦ୍ଭାବନ ପାଇଁ ସେ ବିଜ୍ଞାନ ଜଗତରେ ଚିର ସ୍ମରଣୀୟ ହୋଇ ରହିଲେ ।

୧୯୩୧ ମସିହାରେ ଏହି ପ୍ରଖ୍ୟାତ ବୈଜ୍ଞାନିକଙ୍କର ଦେହାନ୍ତ ହୋଇଥିଲା । ତାଙ୍କର ମର ଶରୀର ସିନା ପୃଥିବୀପୃଷ୍ଠରୁ ସବୁଦିନ ପାଇଁ ଚାଲିଗଲା; କିନ୍ତୁ ଗ୍ରାମଫୋନରେ ରେକର୍ଡ ବାଜିବା ମାତ୍ରେ ଏବଂ ଦିନରାତି ଇଲେକ୍‌ଟ୍ରିକ୍ ବଲ୍‌ବ ଜଳୁଥିବାବେଳେ ମନେହୁଏ ସେ ଯେପରି ଆମ-ମାନଙ୍କ ଭିତରେ ଅଛନ୍ତି । ଯଶ ସବୁଦିନ ରହେ ବୋଲି ଯାହା କହନ୍ତି ତାହା ଯଥାର୍ଥରେ ସତ୍ୟ ।



# ଆଲବର୍ଟ ଆଇନ୍‌ଷ୍ଟାଇନ୍

(୧୮୭୯—୧୯୫୫)

ବେଲ୍‌ଜିୟମ୍ ଦେଶର ବ୍ରାସେଲସ୍ ଷ୍ଟେସନରେ ଟ୍ରେନ ଆସି ପହଞ୍ଚିଲା । ସେହି ଟ୍ରେନରେ ପୃଥିବୀବିଖ୍ୟାତ ବୈଜ୍ଞାନିକ ଆସି ପହଞ୍ଚିବେ । ବେଲ୍‌ଜିୟମ ରାଣୀଙ୍କର ନିମନ୍ତ୍ରଣ ରକ୍ଷା କରି ସେ ତାଙ୍କ ସହିତ ସାକ୍ଷାତ କରିବାକୁ ଆସୁଛନ୍ତି । ପ୍ଲାଟଫର୍ମ ବାହାରେ ରାଣୀଙ୍କର ଲୋକମାନେ ସୁସଜ୍ଜିତ ଗାଡ଼ି ଧରି ସକାଳରୁ ଅପେକ୍ଷା କରି ବସିଛନ୍ତି ।

ଷ୍ଟେସନର ପ୍ଲାଟଫର୍ମରେ ଗାଡ଼ି କିଛି ସମୟ ରହି ପୁଣି ଷ୍ଟେସନ ଛାଡ଼ିଲା । ବର୍ତ୍ତମାନ ଷ୍ଟେସନ ଶୂନଶାନ୍ । ଯେଉଁ କେତେ ଜଣ ଯାତ୍ରୀ ଓହ୍ଲାଇଲେ ରାଣୀଙ୍କର ଲୋକମାନେ ସମସ୍ତଙ୍କୁ ତନ୍ନ ତନ୍ନ କରି ନିରୀକ୍ଷଣ କରିଛନ୍ତି । କିନ୍ତୁ ସେମାନଙ୍କ ଭିତରେ କେହି ବୈଜ୍ଞାନିକ ନୁହନ୍ତି, ଏ ବିଷୟରେ ଆଉ ସେମାନଙ୍କ ସନ୍ଦେହ ରହିଲା ନାହିଁ ।

ରାଣୀଙ୍କୁ ଖବର ଦିଆଗଲା । ଷ୍ଟେସନରୁ ଖାଲି ଗାଡ଼ି ଫେରିଆସିଲା । ପୃଥିବୀବିଖ୍ୟାତ ବୈଜ୍ଞାନିକ ଆସିଲେ ନାହିଁ ।

ଦୁଃଖରେ ରାଣୀ ଭାଙ୍ଗିପଡ଼ିଲେ । ମନେ ମନେ ଭାବିଲେ—ଯିଏ କଥା ଦେଇ କଥା ରକ୍ଷା କରେ ନାହିଁ ସେ ବିଶ୍ୱବିଖ୍ୟାତ ବୈଜ୍ଞାନିକ

ହୋଇପାରନ୍ତି, କିନ୍ତୁ ମଣିଷ କହିଲେ ଯାହା ବୁଝାଏ ତାହା ସେ ଆଦୌ ନୁହନ୍ତି ।

ରାଣୀଙ୍କର ଏହି ଘଟଣାରେ ପୂର୍ଣ୍ଣଚ୍ଛେଦ ପକାଇ ପ୍ରହରୀ ରାଣୀଙ୍କ ହାତକୁ ଖଣ୍ଡିଏ କାଗଜ ବଢ଼ାଇଦେଲା । ପରିଚୟ ପତ୍ର ପଢ଼ି ରାଣୀ ଆନନ୍ଦରେ ଅଧୀର ହୋଇଉଠିଲେ । ସଙ୍ଗେ ସଙ୍ଗେ ପ୍ରହରୀକୁ ଆଦେଶ ଦେଲେ ଯଥାବିଧି ସମ୍ମାନ ଦେଇ ତାଙ୍କୁ ମୋ ନିକଟକୁ ନେଇଆସ ।

ପ୍ରହରୀ ଆଶ୍ଚର୍ଯ୍ୟରେ ରାଣୀଙ୍କ ମୁହଁକୁ ଚାହିଁରହିଲା । ମନେ ମନେ ଭାବିଲା, ଧୂଳିଧୂସରିଆ ଏଇ ବୁଢ଼ାଟି କ'ଣ ବିଶ୍ୱବିଖ୍ୟାତ ବୈଜ୍ଞାନିକ !

ଏହି ନିରହଂକାରୀ, ବିଶ୍ୱବିଖ୍ୟାତ ବୈଜ୍ଞାନିକ ହେଉଛନ୍ତି ଆଇନ୍‌ଷ୍ଟାଇନ୍ । ଏତେ ସମ୍ମାନର ଅଧିକାରୀ ହୋଇ ମଧ୍ୟ ତାଙ୍କ ମନରେ ଗର୍ବ ଟିକିଏ ମାତ୍ର ନ ଥିଲା । ସେ ବଡ଼ ସରଳ ଜୀବନଯାପନ କରୁଥିଲେ । ଧନ ସମ୍ପତ୍ତି କରି ବଡ଼ଲୋକ ହେବାର ଆଶା ତାଙ୍କର କେତେବେଳେ ହେଲେ ନ ଥିଲା । ଗାଡ଼ି ମଟରରେ ଚଢ଼ି ବୁଲିଲେ ଯେ ଆଭିଜାତ୍ୟ ବଢ଼େ, ଏହା ମାନିବାକୁ ସେ ଆଦୌ ପ୍ରସ୍ତୁତ ନ ଥିଲେ । ତେଣୁ ସେ ସଦାସର୍ବଦା ଶାନ୍ତ ସରଳ ଜୀବନ ଯାପନ କରୁଥିଲେ । ରେଲଗାଡ଼ିରେ ସେ ଥାର୍ଡ଼ କ୍ଲାସ ଡବାରେ ବସି ସାଧାରଣ ଲୋକମାନଙ୍କ ସହ ଯାତ୍ରା କରୁଥିଲେ ।

ନୋବେଲ ପୁରସ୍କାରପ୍ରାପ୍ତ ଏହି ବିଶ୍ୱବିଖ୍ୟାତ ବୈଜ୍ଞାନିକ ଏତେ ଅମାୟିକ ଥିଲେ, ଜାଣିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଯେଉଁଦିନ ତାଙ୍କୁ ନୋବେଲ ପୁରସ୍କାର ବାବଦ ଦେଢ଼ ଲକ୍ଷ ଟଙ୍କା ପୁରସ୍କାର ମିଳିଲା ସେଥିରୁ ମାତ୍ର ଗୋଟିଏ ପେନ ରଖି ବାକୀ ସମସ୍ତ ଅର୍ଥ ସେ ଜର୍ମାନୀ ଦେଶର ବିଜ୍ଞାନର ଉନ୍ନତି ନିମିତ୍ତ ଦାନ କରି ଦେଇଥିଲେ ।

୧୮୭୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ଚଉଦ ତାରିଖ ଦିନ ଜର୍ମାନୀ ଦେଶର ଉଲମ୍ ନାମକ ସହରରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କର ନାମ ହେରମ୍ୟାନ୍ ଆଇନ୍‌ଷ୍ଟାଇନ୍ ଥିଲା । ସେ ଇହୁଦୀ ଧର୍ମାବଲମ୍ବୀ ଥିଲେ । ତାଙ୍କ ବାପାଙ୍କର ଇଲେକ୍‌ଟ୍ରିକ୍ ଜିନିଷପତ୍ରର ବ୍ୟବସାୟ ଥିଲା ।

ଆଇନ୍‌ଷ୍ଟାଇନ୍‌ଙ୍କର ମାଆଙ୍କର ନାମ ଥିଲା ପଲିନ୍ । ସେ ଭଲ ସଙ୍ଗୀତଜ୍ଞା ଥିଲେ । ତାଙ୍କର ମଧୁର କଣ୍ଠ ପାଇଁ ସେ ଉଲମ ସହରରେ ଅତି ଆଦରଣୀୟା ହୋଇଥିଲେ । ମାଆଙ୍କର ସଙ୍ଗୀତଚର୍ଚ୍ଚା ପରବର୍ତ୍ତୀ କାଳରେ ଆଇନ୍‌ଷ୍ଟାଇନ୍‌ଙ୍କର ଜୀବନକୁ ଅନେକ ପ୍ରଭାବିତ କରି ପାରିଥିଲା । ସେଥିପାଇଁ ବୋଧହୁଏ ତାଙ୍କ ଭଳି ନୋବେଲ ପୁରସ୍କାରପ୍ରାପ୍ତ ବୈଜ୍ଞାନିକ-ମାନଙ୍କ ଭିତରେ ସଙ୍ଗୀତଜ୍ଞ ଖୁବ୍ କମ କ'ଣ ଆଦୌ ଦେଖିବାକୁ ମିଳନ୍ତି ନାହିଁ କହିଲେ ଚଳେ ।

ପୁଅ ଜନ୍ମ ହେବାଶୁଣି ବାପ ମାଆଙ୍କର ଆନନ୍ଦ କହିଲେ ନ ସରେ । କିନ୍ତୁ ଏ କ'ଣ ? ପୁଅର ତୁଣ୍ଡ ଫିଟିବାର ବୟସ ଉତ୍ତୀର୍ଣ୍ଣ ହୋଇଯିବା ପରେ ସୁଦ୍ଧା ତାହା ମୁହଁରୁ ପଦେ କଥା ସୁଦ୍ଧା ବାହାରୁ ନାହିଁ । ପୁଅଟି କ'ଣ ମୂକ ହେଲା କି ? ମାଆଙ୍କର ଅଧୀରତା ବୃଦ୍ଧି ପାଇଲା ।

ହେର୍‌ମାନ ପଲିନଙ୍କୁ ସାନ୍ତ୍ୱନା ଦେଇ କହିଲେ, ଧୈର୍ଯ୍ୟ ଧର । ମୁଁ କହୁଛି ମୋର ପୁଅ ନିଶ୍ଚୟ କଥା କହିବ । ପ୍ରଭୁ ଆମର ଡାକ ନିଶ୍ଚୟ ଶୁଣିବେ ।

ପ୍ରକୃତରେ ବୟସ ବଢ଼ିବା ସଙ୍ଗେ ସଙ୍ଗେ ବିଳମ୍ବରେ ହେଲେ ମଧ୍ୟ ଆଇନଷ୍ଟାଇନ କଥା କହିବା ଆରମ୍ଭ କଲେ ।

ସାପ ବଢ଼ିଲେ ପେଡ଼ା ବଢ଼ିଲ ପରି ଆଇନଷ୍ଟାଇନ୍‌ଙ୍କ ତନକୁ ଆଜ ଗୋଟିଏ ଭଉଣୀ ହେବା ସଙ୍ଗେ ସଙ୍ଗେ ପରିବାରର ଖର୍ଚ୍ଚ ବଢ଼ି ଚାଲିଲା । ଉଲମ୍ ସହରରେ ହେଉଥିବା ବ୍ୟବସାୟରେ ଲାଭରୁ ପରିବାର ଚଳିବା କଷ୍ଟକର ହୋଇଯାଉଥିବାର ଦେଖି ହେରମାନ ମିଉନିକ୍‌କୁ ଚାଲି ଆସିଲେ । ମିଉନିକ୍ ଏକ ବାଣିଜ୍ୟସ୍ଥଳୀ ଥିଲା । ତାଙ୍କର ଆଶା ଏହିଠାରେ ବ୍ୟବସାୟ ନିଶ୍ଚୟ ଭଲ ଚାଲିବ ।

ଆଇନଷ୍ଟାଇନ୍‌ଙ୍କର ବାଲ୍ୟ ଶିକ୍ଷା ଏହି ମ୍ୟୁନିକ୍ ସହରରେ ଏକ ପାଠଶାଳାରେ ଆରମ୍ଭ ହେଲା । ଛାତ୍ରାବସ୍ଥାର ଆରମ୍ଭ ସମୟରୁ ସେ ସାଙ୍ଗ ସାଥୀ ପିଲମାନଙ୍କ ସହ ମିଶି ପାରୁ ନ ଥିଲେ । ସର୍ବଦା ଏକାକୀ ରହିବାକୁ ଭଲ ପାଉଥିଲେ ଏବଂ କିଛି ନା କିଛି ଚିନ୍ତା କରୁଥିବାର ଜଣା ପଡ଼ୁଥିଲା । ତାଙ୍କର ଏହି ଅଭ୍ୟାସ ପ୍ରାଥମିକ ସ୍ତରରୁ ଆରମ୍ଭ ହୋଇ କଲେଜ ଶିକ୍ଷା ଶେଷ ପର୍ଯ୍ୟନ୍ତ ଥିଲା ।

ପାଠଶାଳାରେ ସେ ସେତେ ମେଧାବୀ ଛାତ୍ର ନ ଥିଲେ । କେବଳ ଗଣିତ ଶାସ୍ତ୍ର ତାଙ୍କୁ ଭଲ ଲାଗୁଥିଲା । ଘରେ ତାଙ୍କର କକାଙ୍କଠାରୁ ସେ ଜଟିଳ ଅଙ୍କଗୁଡ଼ିକ ବୁଝି ନେଉଥିଲେ । ପ୍ରକୃତରେ ତାଙ୍କ କକାଙ୍କର ଯତ୍ନ ହେତୁ ସେ ଗଣିତ ଶାସ୍ତ୍ରରେ ବ୍ୟୁତ୍ପତ୍ତି ଲାଭ କରିପାରିଥିଲେ ।

ମିଉନିକ୍ ସହରରେ ଆଇନଷ୍ଟାଇନ୍‌ଙ୍କ ବାପାଙ୍କର ବ୍ୟବସାୟ ଭଲ ଚାଲିଲା । ତେଣୁ ସେମାନେ ସେହିଠାରେ ସ୍ଥାୟୀ ବାସିନ୍ଦା ହୋଇ ରହିବା ପାଇଁ ସ୍ଥିର କରିନେଲେ । ପ୍ରତ୍ୟେକ ଗୁରୁବାର ଦିନ ତାଙ୍କ ଧର୍ମମାତ ଅନୁସାରେ ଜଣେ ଦରିଦ୍ର ବାଳକକୁ ସାହାଯ୍ୟ କରିବା କଥା । ହେରମାନ ସେଥିପାଇଁ ମ୍ୟାକ୍‌ସଟାଲମି ନାମକ ଜଣେ କଲେଜ ଛାତ୍ରକୁ ଘରକୁ ଡାକ ତାହାକୁ ଖାଇବାକୁ ଦେବା ସଙ୍ଗେ ସଙ୍ଗେ ଆର୍ଥିକ ସାହାଯ୍ୟ

ମଧ୍ୟ କରୁଥିଲେ । ମ୍ୟାକ୍ସ ଟାଲମି ଜଣେ ମେଧାବୀ ଛାତ୍ର ଥିଲେ । ତାଙ୍କର ପ୍ରଭାବ ଏବଂ ସମ୍ପର୍କରେ ଆସି ଆଇନ୍‌ଷ୍ଟାଇନ୍ ଅଙ୍କ ଶାସ୍ତ୍ରରେ ପ୍ରଗାଢ଼ ମନୋନିବେଶ କରିପାରିଲେ ।

କେବଳ ଗଣିତ ବ୍ୟତୀତ ଆଉ ଅନ୍ୟ କୌଣସି ବିଷୟରେ ଆଇନ୍‌ଷ୍ଟାଇନ୍ ସର୍ବୋଚ୍ଚ ନମ୍ବର ରଖିପାରୁ ନ ଥିଲେ । ତେଣୁ ତାଙ୍କର ବାପା ବିଚାର କଲେ ଯେ, ଆଇନ୍‌ଷ୍ଟାଇନ୍‌ଙ୍କୁ ଯଦି ଇଂଜିନିୟରିଂ ଶିକ୍ଷା ଦିଆଯିବ ତେବେ ସେ ନିଶ୍ଚୟ ସେଥିରେ ସାଫଲ୍ୟ ଅର୍ଜନ କରିପାରିବେ । ତେଣୁ ସେ ତାହାଙ୍କର ନାମ ସ୍ୱିଜରଲଣ୍ଡର ଜୁରିଚ ସହରରେ ଥିବା ପଲିଟେକ୍‌ନିକ୍ ଇନଷ୍ଟିଚ୍ୟୁଟ୍‌ରେ ଲେଖାଇବା ପାଇଁ ଦରଖାସ୍ତ କଲେ ।

କିନ୍ତୁ ହାୟ ! ଏହି ପଲିଟେକ୍‌ନିକ ଶିକ୍ଷା ପାଇଁ ଯେଉଁ ନିମ୍ନତମ ଯୋଗ୍ୟତା ଦରକାର ସେହି ମାଟ୍ରିକ ପରୀକ୍ଷାରେ ମଧ୍ୟ ଆଇନ୍‌ଷ୍ଟାଇନ୍ ପାଶ୍ କରିପାରୁ ନାହାନ୍ତି । ତେଣୁ ବାପାଙ୍କର ଉଚ୍ଚ ଆଶା କେବଳ ଆଶାରେ ହିଁ ରହିଗଲା ।

ସାମାନ୍ୟ ମାଟ୍ରିକ ପରୀକ୍ଷାରେ ପାଶ୍ ନ କଲେ ଯେ ଉଚ୍ଚ ଶିକ୍ଷା ପାଇବା ଅସମ୍ଭବ ଏହି ଧାରଣା ଯେତେବେଳେ ଆଇନ୍‌ଷ୍ଟାଇନ୍ ବୁଝି-ପାରିଲେ ସେତେବେଳେ ତାଙ୍କ ମନରେ ଏକ ଭୀଷଣ ପ୍ରତିକ୍ରିୟା ସୃଷ୍ଟି ହେଲା । ପାଠ ପଢ଼ି ପାଶ୍ କରିବା ପାଇଁ ତାଙ୍କ ମନରେ ଜିଦ୍ ବଢ଼ିଗଲା । ସେ ମିଉନିକ୍ ସହରରେ ପଢ଼ୁଥିବା ହାଇସ୍କୁଲରୁ ନାମ କଟାଇ ସେହିଠାରୁ ଏକତିରିଶ ମାଇଲ ଦୂର ଆରଭ ସହରରେ ଥିବା ଆଉ ଏକ ହାଇସ୍କୁଲରେ ନାମ ଲେଖାଇଲେ ।

ଏହି ସ୍କୁଲରେ ଗଣିତ ଓ ବିଜ୍ଞାନ ବ୍ୟତୀତ ଅନ୍ୟ ଯେଉଁସବୁ ବିଷୟରେ ଦୁର୍ବଳ ସେହି ସବୁ ବିଷୟରେ ପ୍ରଗାଢ଼ ପରିଶ୍ରମ କଲେ । ସେ ଅଳ୍ପ ଦିନ ପରେ ପରୀକ୍ଷାରେ ପାଶ୍ କଲେ ।

ମାଟ୍ରିକ୍ ପରୀକ୍ଷାରେ ପାଶ୍ କରିବା ପରେ ସେ ଜୁରିଚ ସହରର ପଲିଟେକ୍‌ନିକ୍ ସ୍କୁଲରେ ନାମ ଲେଖାଇଲେ । ୟୁରୋପ ମହାଦେଶରେ ଜୁରିଚ ଏକ ରମଣୀୟ ସ୍ଥାନ । ଠିକ୍ ଆମ ଭାରତବର୍ଷର ଭୂସ୍ୱର୍ଗ କାଶ୍ମୀର ଭଳି । ଜୁରିଚର ପ୍ରାକୃତିକ ସୌନ୍ଦର୍ଯ୍ୟ ଆଇନ୍‌ଷ୍ଟାଇନ୍‌ଙ୍କ ମନକୁ ବିଶେଷ ପ୍ରଭାବିତ କରି ପାରିଥିଲା । ତାଙ୍କର ମାଆ ତ ସଙ୍ଗୀତଜ୍ଞା ଥିଲେ । ତାହାଙ୍କ-ଠାରୁ ଆଇନ୍‌ଷ୍ଟାଇନ୍ ସଙ୍ଗୀତ ଶିଖିଥିଲେ । ବେହେଲା ବଜାଇବା ତାଙ୍କ ଜୀବନର ପ୍ରଧାନ ସୌଖୀନ ଥିଲା । କଳାପ୍ରାଣ ଆଇନ୍‌ଷ୍ଟାଇନଙ୍କୁ ଜୁରିଚ୍‌ର ପ୍ରାକୃତିକ ପରିବେଶ ବେଶ୍ ଆନନ୍ଦ ଦେଇ ପାରୁଥିଲା ।

ଖ୍ରୀଷ୍ଟାନ୍ ଏବଂ ଇହୁଦୀମାନଙ୍କ ଭିତରେ ଆଦୌ ଭଲ ଭାବ ନ ଥାଏ । ତେଣୁ ମିଉନିକ୍ ସହରରେ ସେ ଏହି ସଙ୍କୀର୍ଣ୍ଣତା ଅନୁଭବ କରିଥିଲେ । ଜୁରିଚଠାରେ କିନ୍ତୁ ସେ ଏହି ଭେଦଭାବ ଆଦୌ ଅନୁଭବ କରିପାରିଲେ ନାହିଁ । ତେଣୁ ସେହିଠାରେ ସ୍ଥାୟୀ ବାସିନ୍ଦା ହେବା ପାଇଁ ସେ ଇଚ୍ଛା କଲେ । ତାଙ୍କ ବାପାଙ୍କର ମଧ୍ୟ ସେହି ଇଚ୍ଛା ହେଲା । ସେଠାର ପ୍ରଚଳିତ ନିୟମ ଅନୁସାରେ ସ୍ଥାୟୀ ବାସିନ୍ଦା ହେବା ପାଇଁ ସେହି ଦେଶରେ କିଛି ଟଙ୍କା ଜମା ଦେବାକୁ ହୁଏ । କିନ୍ତୁ ସେତିକ ଟଙ୍କା ଆଇନ୍‌ଷ୍ଟାଇନ୍‌ଙ୍କ ବାପା ଯୋଗାଡ଼ କରିପାରିଲେ ନାହିଁ । ତାଙ୍କର ବ୍ୟବସାୟ ସେତେବେଳେ ସେତେ ଭଲ ଚାଲୁ ନ ଥାଏ ।

ଦାରିଦ୍ର୍ୟ ଯେ କି ଭୀଷଣ ଜିନିଷ ତାହା ଆଇନ୍‌ଷ୍ଟାଇନ୍ ମର୍ମେ ମର୍ମେ ଅନୁଭବ କଲେ । ତେଣୁ ପରବର୍ତ୍ତୀ ଜୀବନରେ ସେ କୌଣସି ଦରିଦ୍ର ବ୍ୟକ୍ତିକୁ ଦେଖୁଥିଲେ ତାହାକୁ ମୁକ୍ତ ହସ୍ତରେ ଦାନ କରୁଥିଲେ ।

ପଲିଟେକ୍‌ନିକ ଏକାଡେମୀରେ ଆଇନ୍‌ଷ୍ଟାଇନ୍ କେବଳ ଗଣିତ-ଶାସ୍ତ୍ର ଏବଂ ପଦାର୍ଥ ବିଜ୍ଞାନ ଗବେଷଣାରେ ମଗ୍ନ ରହିଲେ । ତାହାଙ୍କର ଗବେଷଣା ପାଇଁ ତାଙ୍କୁ ତହିଁସ୍ଥ ଦୁଇ ଜଣ ଅଧ୍ୟାପକ ଯଥାକ୍ରମେ ପଦାର୍ଥ-ବିଜ୍ଞାନବିତ୍ ଓ୍ୱେବର ଏବଂ ଅଙ୍କଶାସ୍ତ୍ର ବିଶାରଦ ମିନ୍‌କୋଭସ୍କି ଯଥେଷ୍ଟ ପ୍ରେରଣା ଦେଇଥିଲେ । ବିଶ୍ୱବିଦ୍ୟାଳୟର ପାଠପଢ଼ା ବ୍ୟତୀତ ଅଧିକାଂଶ ସମୟ ସେ ଲାଇବ୍ରେରୀରେ ପାଠ ପଢ଼ିବାରେ ଅତିବାହିତ କରୁଥିଲେ ।

ଆଇନ୍‌ଷ୍ଟାଇନ୍ ସଦାସର୍ବଦା ନିଜର ବ୍ୟକ୍ତିଗତ ଜୀବନ ବିଷୟରେ ଉଦାସୀନ ରହୁଥିଲେ । କେବଳ ପାଠ ପଢ଼ିବା ତାଙ୍କର ନିଶା ଥିଲା । ଏହି ଏକାଡେମୀରେ ତାଙ୍କର ପ୍ରଧାନ ବାନ୍ଧବୀ ଥିଲେ ମିଲେଭା । ମିଲେଭା ଆଇନ୍‌ଷ୍ଟାଇନ୍‌ଙ୍କର କେବଳ ସହପାଠିନୀ ନ ଥିଲେ, ସେ ତାଙ୍କର ପୋଷାକପତ୍ର, ପଢ଼ାବନ୍ଧ ଏବଂ ଖାଇବା ପିଇବାର ଯତ୍ନ ନେଉଥିଲେ । ସେ ଦୁହିଁଙ୍କ ଭିତରେ ସମ୍ପର୍କ ଏତେ ନିବିଡ଼ ହୋଇଉଠିଲା ଯେ ପରବର୍ତ୍ତୀ ଜୀବନରେ ଦୁହେଁ ପରସ୍ପରକୁ ବିବାହ କରିଥିଲେ ।

୧ ୦୦ ଖ୍ରୀ: ଅ:ରେ ଟେକ୍‌ନିକାଲ ଇନ୍‌ଷ୍ଟିଚ୍ୟୁଟ୍‌ର ପରୀକ୍ଷା ଫଳ ପ୍ରକାଶିତ ହେଲା । ଯେଉଁ ପିଲା ଦିନେ ମାଟ୍ରିକ ପରୀକ୍ଷାରେ ପାଶ୍ କରିବା ଅସମ୍ଭବ ହୋଇ ଉଠିଥିଲା । ସେହି ଯୁବକ ବିଶ୍ୱବିଦ୍ୟାଳୟର ପରୀକ୍ଷାରେ ମେଧାବୀ ଛାତ୍ରରୂପେ କୃତିତ୍ୱ ହାସଲ କରି ପାଶ୍ କଲେ । ଏଇଥିରୁ ବୁଝାପଡ଼େ—ଯତ୍ନ, ଅଧ୍ୟବସାୟ, ଉଦ୍ୟମ ଫଳେ, ଅସାଧ୍ୟ ହୁଏ ସାଧ୍ୟ ଏହି ଭୂତଳେ ।

ବାପାଙ୍କର ସ୍ୱପ୍ନ ସଫଳ ହେଲା । ଆଇନ୍‌ଷ୍ଟାଇନ୍ ଭାବିଲେ, ଏଣିକି ଚାକିରୀ ଖଣ୍ଡିଏ କଲେ ତାଙ୍କ ପରିବାରର ଦୁଃଖ ଘୁଞ୍ଚିପାରିବ । କିନ୍ତୁ ଚାକିରୀ ଖଣ୍ଡିଏ କପାଳରେ ଜୁଟିଲେ ସିନା ! ବହୁତ ଦରଖାସ୍ତ କଲା ପରେ

ଶେଷରେ ତାଙ୍କର ଜଣେ ସହପାଠୀଙ୍କର ବାପାଙ୍କ ସୁପାରଶ ଫଳରେ ଗୋଟିଏ ସରକାରୀ ଅଫିସରେ ଚାକରୀ ପାଇଲେ । ଏହି ଅଫିସରେ ଯାହା କାର୍ଯ୍ୟ ତାହା ଆଇନ୍‌ଷ୍ଟାଇନ୍‌ଙ୍କୁ ମାତ୍ର ଦୁଇ ଘଣ୍ଟାରେ ସାରିଦେବାକୁ ହେଉଥିଲା । ବାକି ଅବଶିଷ୍ଟାଂଶ ସମୟ କଟିବ କପରି ? ତେଣୁ ଅଫିସର କର୍ମଚାରୀଙ୍କ ଅଗୋଚରରେ ଫାଇଲ ଭିତରେ ଲୁଚାଇ ସେ ଅଙ୍କ କଷି ପଡ଼ୁଥିଲେ ।

ଏହି ସରକାରୀ ଅଫିସରେ ସେ ମାତ୍ର ତିନ ବର୍ଷ କାମ କରିଥିଲେ । ତାହାଙ୍କର ପ୍ରଥମ ପ୍ରବନ୍ଧ "ଅଣୁ" ସମ୍ବନ୍ଧରେ ପ୍ରକାଶିତ ହେଲା । ଏହି ପ୍ରବନ୍ଧ ଏକ ଚମକ ସୃଷ୍ଟି କଲା । ସମସ୍ତଙ୍କ ଦୃଷ୍ଟି ତାହାଙ୍କ ଉପରେ ଆକର୍ଷିତ ହେଲା ।

ଏହା ପରେ ପରେ ଦୁଇ ତିନୋଟି ପ୍ରବନ୍ଧ ପ୍ରକାଶିତ ହେଲା । ଜୁରିଚ ବିଶ୍ୱବିଦ୍ୟାଳୟ ପକ୍ଷରୁ ତାହାଙ୍କୁ "ଡକ୍ଟର ଅଫ୍ ଫିଲସଫି" ଉପାଧି ପ୍ରଦାନ କରାଗଲା ।

ବିଜ୍ଞାନ କ୍ଷେତ୍ରରେ ଗବେଷଣା କାର୍ଯ୍ୟ କରିବା ପାଇଁ ତାଙ୍କୁ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ୁଥିଲା । ତାଙ୍କର ଆର୍ଥିକ ସଚ୍ଛଳତା ଥିଲେ ଏହି ପରିଶ୍ରମ ଅବଶ୍ୟ ତାଙ୍କୁ ବାଧୁ ନ ଥାନ୍ତା । "ସ୍ପେଶାଲ ଥିଓରି ଅଫ୍ ରିଲେଟିଭିଟି" ବିଷୟ ଆବିଷ୍କାର କରି ସେ ଯେଉଁ ପ୍ରବନ୍ଧ ରଚନା କଲେ ସେଥିପାଇଁ ତାଙ୍କୁ ଏତେ ପରିଶ୍ରମ କରିବାକୁ ପଡ଼ିଲା ଯେ ସେ ଏହାପରେ ସମ୍ପୂର୍ଣ୍ଣ ଅସୁସ୍ଥ ହୋଇପଡ଼ିଲେ ।

ସବୁଠାରୁ ମଜାର କଥା, ତାଙ୍କର ଏହି ପ୍ରବନ୍ଧ ଯାହା ପାଇଁ ସେ ବିଶ୍ୱବିଖ୍ୟାତ ହୋଇପାରିଲେ ତାହାକୁ ସେତେବେଳକାର ପତ୍ରିକାର

ସମ୍ପାଦକଗଣ ପ୍ରକାଶିତ ହେବା ପାଇଁ ମନୋନୀତ କଲେ ନାହିଁ । ଫଳରେ ତାଙ୍କୁ ନିଜ ପ୍ରବନ୍ଧଟି ଧରି ଜଣେକ ପତ୍ରିକାର ସମ୍ପାଦକଙ୍କର ଦ୍ୱାରସ୍ଥ ହୋଇ ଅନୁରୋଧ କରିବାକୁ ହୋଇଥିଲା ।

ପତ୍ରିକାରେ ପ୍ରବନ୍ଧଟି ପ୍ରକାଶିତ ହେବା ମାତ୍ରେ ଦେଶବିଦେଶର ବୈଜ୍ଞାନିକମାନଙ୍କଠାରୁ ଉଚ୍ଛ୍ୱସିତ ପ୍ରଶଂସାପତ୍ରମାନ ଆସି ପତ୍ରିକାର ସମ୍ପାଦକଙ୍କ ନିକଟରେ ପହଞ୍ଚିଲା । ପତ୍ରିକାଟିର କାଟତି ଅସମ୍ଭବ ଭାବରେ ବୃଦ୍ଧି ପାଇଲା । ଆଇନଷ୍ଟାଇନ୍‌ଙ୍କର କୃତିତ୍ୱ ଚାରିଆଡ଼େ ପ୍ରସାର ଲଭିଲା । ଫଳରେ ଯେଉଁ ଜୁରିଚ୍ ବିଶ୍ୱବିଦ୍ୟାଳୟରେ ଚାକିରି କରିବା ପାଇଁ ଦରଖାସ୍ତ କରି ସେ ନିରାଶ ହୋଇଥିଲେ ସେହି ବିଶ୍ୱବିଦ୍ୟାଳୟ ପକ୍ଷରୁ ଅଧ୍ୟାପକ ପଦବୀ ପାଇଁ ଆହ୍ୱାନ ଆସିଲା । ବିଶ୍ୱବିଦ୍ୟାଳୟର ଅଧ୍ୟାପକ-ମାନେ ମନେ ମନେ ଲଜ୍ଜିତ ହେଲେ ଯେ ଏହିଭଳି ଜଣେ ପ୍ରତିଭାସମ୍ପନ୍ନ ବ୍ୟକ୍ତି ସରକାରୀ ଅଫିସରେ ସାମାନ୍ୟ ଚାକିରିରେ ଅଦ୍ୟାବଧି ନିଯୁକ୍ତ ଅଛନ୍ତି । ବହୁ ବନ୍ଧୁ ଓ ହିତାକାଙ୍କ୍ଷୀମାନଙ୍କର ଅନୁରୋଧକୁ ଏଡ଼ାଇ ଦେଇ ନ ପାରି ଆଇନଷ୍ଟାଇନ୍ ୧୯୦୫ ଖ୍ରୀ. ଅ.ରେ ଜୁରିଚ୍ ବିଶ୍ୱବିଦ୍ୟା-ଳୟରେ ଅଧ୍ୟାପକ ରୂପେ ଯୋଗ ଦେଲେ ।

ପିଲାଦିନେ ଯାହାଙ୍କର ପାଟି ଫିଟୁ ନ ଥିଲା ବୋଲି ମାଆ ମନଦୁଃଖ କରୁଥିଲେ ମୋ ପୁଅ ମୂକ ହେବ ବୋଲି, ଥରକରେ ଯିଏ ସାମାନ୍ୟ ମାଟ୍ରିକ ପରୀକ୍ଷାରେ ପାଶ କରିପାରି ନ ଥିଲେ ବୋଲି ଶିକ୍ଷକମାନେ କହୁଥିଲେ ଏଇଟା ଗଜମୂର୍ଖ, ସେହି ମୂକ ଓ ଗଜମୂର୍ଖ ଦିନେ ସମଗ୍ର ବିଶ୍ୱକୁ ଚମତ୍କୃତ କରିଦେଲା । ପୃଥିବୀର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେବା ପାଇଁ ତାହାଙ୍କ ନିକଟରେ ନିମନ୍ତ୍ରଣମାନ ପହଞ୍ଚିଲା । ପ୍ରଥମେ ଡାକରା ପାଇଲେ ପ୍ରାଗବିଶ୍ୱବିଦ୍ୟାଳୟରୁ ତାହାପରେ ୟୁରୋପର ବିଭିନ୍ନ ବିଶ୍ୱ-

ବିଦ୍ୟାଳୟରେ ସେ ତାଙ୍କର ସାରଗର୍ଭକ ଭାଷଣମାନ ଦେବାକୁ ଆରମ୍ଭ କଲେ ।

ଏହାପରେ ସେ ବର୍ଲିନର "ଏକାଡେମୀ ଅଫ୍ ସାଇନ୍ସ" ନାମକ ପ୍ରଖ୍ୟାତ ବୈଜ୍ଞାନିକ ଗବେଷଣା କେନ୍ଦ୍ରର ପରିଚାଳକ ରୂପେ ନିଯୁକ୍ତି ପାଇଲେ । ସେତେବେଳକୁ ତାହାଙ୍କର ବୟସ ମାତ୍ର ଚଉତିରିଶ । ତାଙ୍କ ବ୍ୟତୀତ ଏତେ କମ୍ ବୟସରେ କେହି ଏହା ପୂର୍ବରୁ ଏତେ ବଡ଼ ବିଖ୍ୟାତ ବୈଜ୍ଞାନିକ ଗବେଷଣା କେନ୍ଦ୍ରର ପରିଚାଳନା ଦାୟିତ୍ୱ ଗ୍ରହଣ କରି ନ ଥିଲେ ।

ପ୍ରତିଭାର ଶତ୍ରୁ ସଦାବେଳେ ଥାଆନ୍ତି । ଆହୁରି ମଧ୍ୟ ମଣିଷ ଜୀବନରେ ଭଲ ସଙ୍ଗେ ସଙ୍ଗେ ଖରାପ ସମୟ ଆସେ । ସେହିପରି ଆଇନ୍‌ଷ୍ଟାଇନ୍‌ଙ୍କ ଏତେ ଅଳ୍ପ ବୟସରେ ଅସାମାନ୍ୟ କୃତିତ୍ୱକୁ କେତେକ ଲୋକ ସହ୍ୟ କରିପାରୁ ନ ଥିଲେ । ତାଙ୍କର "ଜେନେରାଲ ଥିଓରି ଅଫ ରିଲେଟିଭିଟି" ତଥ୍ୟ ଆବିଷ୍କୃତ ହେବା ଫଳରେ ସମଗ୍ର ଇଂଲଣ୍ଡରେ ଚହଳ ଦେଖାଗଲା । ଏହି ତଥ୍ୟ ଫଳରେ ପୂର୍ବରୁ ନିଉଟନ ଆବିଷ୍କାର କରିଥିବା ତଥ୍ୟରେ ଅନେକ ପରିବର୍ତ୍ତନ ଦେଖାଯିବାର ସୂଚନା ମିଳିଲା ।

ଆଇନ୍‌ଷ୍ଟାଇନ୍‌ଙ୍କର ଏହି ମତବାଦ ସତ୍ୟ କି ମିଥ୍ୟା ସେ ବିଷୟରେ ଅନେକ ଆଲୋଚନା ଆରମ୍ଭ ହେବାକୁ ଲାଗିଲା । ଶେଷରେ ସୂର୍ଯ୍ୟଗ୍ରହଣ ସମୟର ଛବି ନେଇ ତାହାଙ୍କର ମତ ଠିକ୍ କି ନାହିଁ ପରୀକ୍ଷା କରିବା ପାଇଁ ବୈଜ୍ଞାନିକମାନେ ଆହ୍ୱାନ ଦେଲେ ।

ଏହି ଆହ୍ୱାନକୁ ଆଇନ୍‌ଷ୍ଟାଇନ୍ ନମ୍ରତାର ସହିତ ଗ୍ରହଣ କଲେ । ଶେଷରେ ୧୯୧୯ ଖ୍ରୀ. ଅ.ରେ ବ୍ରାଜିଲର ସବ୍ରାଲ ନାମକ ସହରକୁ ସମସ୍ତ

ବୈଜ୍ଞାନିକମାନଙ୍କ ସହ ଗଲେ । ସୂର୍ଯ୍ୟଗ୍ରହଣ ଠିକ୍ ସମୟରେ ଆରମ୍ଭ ହେବା ସଙ୍ଗେ ସଙ୍ଗେ ତାହାର ଛବି ନିଆଗଲା । ଶେଷରେ ଇଂଲଣ୍ଡର ରୟାଲ ସୋସାଇଟି ଏହି ଛବିଗୁଡ଼ିକୁ ପରୀକ୍ଷା କରି ଆଇନ୍‌ଷ୍ଟାଇନ୍‌ଙ୍କର ଉଚ୍ଛ୍ୱସିତ ପ୍ରଶଂସା କରି ରିପୋର୍ଟ ପ୍ରକାଶ କଲେ ।

ଏହାପରେ ଆଇନ୍‌ଷ୍ଟାଇନ୍‌ଙ୍କର ଆସନ ସମଗ୍ର ବିଶ୍ୱଦରବାରରେ ପ୍ରତିଷ୍ଠିତ ହୋଇଗଲା ।

୧୯୨୧ ଖ୍ରୀ. ଅ.ରେ "ଫୋଟୋନ ତତ୍ତ୍ୱ" ଉଦ୍ଭାବନ ପାଇଁ ତାହାଙ୍କୁ ନୋବେଲ ପୁରସ୍କାର ଅର୍ପଣ କରାଯାଇଥିଲା ।

ବିଂଶ ଶତାବ୍ଦୀର ବିଜ୍ଞାନ ଜଗତକୁ ଯେତେ ମୂଲ୍ୟବାନ ତଥ୍ୟ ଉପହାର ମିଳିଛି ସେଥିମଧ୍ୟରେ "ଆପେକ୍ଷିକ ତତ୍ତ୍ୱ" ବା "ଥିଓରି ଅଫ୍ ରିଲେଟିଭିଟି" ହେଉଛି ସର୍ବଶ୍ରେଷ୍ଠ ।

୧୯୩୦ ଖ୍ରୀ. ଅ.ରେ ସେ ଆମେରିକାର କାଲିଫର୍ଣ୍ଣିଆ ବିଶ୍ୱ-ବିଦ୍ୟାଳୟରେ ଭାଷଣ ଦେବାକୁ ଯାଇଥିଲେ । ଭାଷଣ ଦେବା ପରେ ସେଠାର ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ଅନୁରୋଧ ଭାଙ୍ଗି ନ ପାରି ସେ ଯୁକ୍ତରାଷ୍ଟ୍ରରେ ତିନି ବର୍ଷ କଟାଇଥିଲେ । ଏହି ସମୟରେ ସେ ଜାଣିପାରିଲେ ଯେ ଜର୍ମାନୀରେ ବର୍ତ୍ତମାନ ହିଟ୍‌ଲରର ଏକଛତ୍ରବାଦ ଶାସନ ଆରମ୍ଭ କରିଛନ୍ତି । ଜନସାଧାରଣଙ୍କର ଦୈନନ୍ଦିନ ଜୀବନଯାପନପ୍ରଣାଳୀ ବିପର୍ଯ୍ୟସ୍ତ ହୋଇ-ପଡ଼ିଛି । ଆଇନ୍‌ଷ୍ଟାଇନ୍ ତେଣୁ ଆଉ ବର୍ଲିନ୍ ଫେରିବାକୁ ଇଚ୍ଛା କଲେ ନାହିଁ । ଯୁକ୍ତରାଷ୍ଟ୍ର ଆମେରିକାରେ ନାଗରିକତ୍ୱ ଗ୍ରହଣ କରିନେଲେ । ପ୍ରିନ୍‌ସଟନସ୍ଥିତ "ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡ଼ଭାନ୍‌ସଡ଼ ଷ୍ଟଡ଼ିଜ" ନାମକ ଏକ ଗବେଷଣା ସଂସ୍ଥାରେ ସେ ପଦାର୍ଥ ବିଜ୍ଞାନର ମୁଖ୍ୟ ଅଧ୍ୟାପକତ୍ୱ ଗ୍ରହଣ କରି ନେଇଥିଲେ ।

ଏହି ସରଳ ଶାନ୍ତିପ୍ରିୟ ବୈଜ୍ଞାନିକଙ୍କ ଜୀବନରେ ଦୁର୍ଦ୍ଦିନ ଆରମ୍ଭ ହେଲା । ତାଙ୍କର ପ୍ରଥମା ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେବା ପରେ ସେ ପୁନର୍ବାର ବିବାହ କରିଥିଲେ ଏଲସାଙ୍କୁ । ଏଲସା ତାଙ୍କର ସମସ୍ତ ଦାୟିତ୍ୱ ଗ୍ରହଣ କରିଥିଲେ । ଏହିଠାରେ ତାଙ୍କର ଦ୍ୱିତୀୟା ପତ୍ନୀଙ୍କ ବିୟୋଗ ହେଲା । ଏହା ତାଙ୍କୁ ଦାରୁଣ ଦୁଃଖ ଦେଲା । ତାଙ୍କର ପାରିବାରିକ ଶାନ୍ତି ନଷ୍ଟ ହେବାକୁ ଆରମ୍ଭ ହେଲା ।

ଆମେରିକା ପରମାଣୁ ବୋମା ୧୯୩୨ ଖ୍ରୀ: ଅ:ରେ ଆରମ୍ଭ କଲା । ଅଣୁ-ପରମାଣୁ ସମ୍ବନ୍ଧରେ ସମସ୍ତ ତଥ୍ୟ ଆଇନ୍‌ଷ୍ଟାଇନ୍ ଉଦ୍ଭାବନ କରିଥିଲେ । ଫଳରେ ତାଙ୍କୁ ପରମାଣୁ ବୋମାର ଜନକ କୁହାଯାଏ ।

ଊଣେଇଶି ଶହ ପଞ୍ଚାବନ ମସିହା ଏପ୍ରିଲ୍ ୧୮ରେ ତାରିଖ ଦିନ ଏହି ମହାନ୍ ବୈଜ୍ଞାନିକଙ୍କର ପ୍ରୟାଣ ଘଟିଲା । ତାହାଙ୍କର ମୃତ୍ୟୁର ସମ୍ବାଦ ପ୍ରଚାରିତ ହେବା କ୍ଷଣି ସମଗ୍ର ବିଶ୍ୱରେ ଦାରୁଣ ଶୋକଛାୟା ଖେଳି-ଯାଇଥିଲା ।



# ଆଲେକଜାଣ୍ଡର ଫ୍ଲେମି

## ( ୧୮୮୧—୧୯୫୫ )

'ପେନ୍‌ସିଲିନ୍‌' ଏହି ନାମଟି ଆଜ ଗୋଟିଏ ସାଧାରଣ ବ୍ୟବହୃତ ଶବ୍ଦ । ପିଲାଠାରୁ ବୁଢ଼ାଯାଏ ପ୍ରତ୍ୟେକଙ୍କ ତୁଣ୍ଡରେ ପେନ୍‌ସିଲିନ୍ ଏପରି ବସା ବାନ୍ଧିଛି ଯେ ସାମାନ୍ୟ ଜର, କାଶ, ସର୍ଦ୍ଦି, ଘାଆ ହେବା ମାତ୍ରେ ସଙ୍ଗେ ସଙ୍ଗେ ପାଟିରୁ ବାହାରି ପଡ଼ୁଛି—ଭୁଲ୍‌ରେ ରହୁଛ କ'ଣ, ତାକୁ ପେନ୍‌ସିଲିନ୍ ଇଞ୍ଜେକ୍‌ସନ ଦେଇଦେଉନ, ଦେଖିବ ସଙ୍ଗେ ସଙ୍ଗେ ଭଲ ହୋଇଯିବ । ଏହି ପେନ୍‌ସିଲିନ କେବଳ ଇଞ୍ଜେକସନ୍ ରୂପରେ ନୁହେଁ, ବଟିକା, ଡ୍ରପ୍ ଏବଂ ସିରପ୍ ରୂପେ ବ୍ୟବହାର କରିବା ପାଇଁ ବଜାରରେ ମିଳିପାରୁଛି ।

ଅମୃତ ଭଳି ଏଇ ପେନ୍‌ସିଲିନ୍ ଆବିଷ୍କୃତ ହେବା ପରେ ପରେ ସଂସାରରୁ ମୃତ୍ୟୁସଂଖ୍ୟା ବହୁତ ହ୍ରାସ ପାଇଲା । କଷ୍ଟ, ଯନ୍ତ୍ରଣା ଅନେକ କମିଗଲା । ଦୀର୍ଘଦିନ ଧରି ରୋଗରେ ସଡ଼ିବା ମଧ୍ୟ ଦୁଃସ୍ୱପ୍ନ ହେଲା ।

ଏହି ମହୌଷଧିଟିକୁ ଆବିଷ୍କାର କରିଥିଲେ ଆଲେକ୍‌ଜାଣ୍ଡର ଫ୍ଲେମି । ସେ ସ୍କଟ୍‌ଲଣ୍ଡ ସହରର ଆସ୍ବାରସାର ନାମକ ଏକ ଗ୍ରାମରେ ୧୮୮୧ ମସିହା ଅଗଷ୍ଟ ମାସ ଛଅ ତାରିଖରେ ଜନ୍ମଗ୍ରହଣ କରିଥିଲେ

ଅଧିକାଂଶ ବୈଜ୍ଞାନିକମାନଙ୍କ ଭଳି ଫ୍ଲେମିଙ୍କର ବାପାଙ୍କର ଆର୍ଥିକ ଅବସ୍ଥା ମଧ୍ୟ ସଚ୍ଛଳ ନ ଥିଲା । ସେ ଜଣେ କୃଷକ ଥିଲେ । ଆୟ ମଧ୍ୟ ତାଙ୍କର ଖୁବ୍ ଅଳ୍ପ ଥିଲା । ନିଜ ପରିବାରର ବାର୍ଷିକ ଚଳାଚଳ ଯେନ ତେନ ପ୍ରକାରେଣ ଚଳି ଯାଉଥିଲା । ଫ୍ଲେମି ଏପରି ଏକ ମଫସଲ ଗ୍ରାମରେ ଜନ୍ମ ହୋଇଥିଲେ ଯେ ସେ ଗ୍ରାମରେ ପ୍ରାଇମେରୀ ସ୍କୁଲଟିଏ ମଧ୍ୟ ନ ଥିଲା । ସେଥିପାଇଁ ଫ୍ଲେମିଙ୍କୁ ପିଲାଦିନେ ଚାଲି ଚାଲି ଚାରି ମାଇଲ ଯାଇ ଅନ୍ୟ ଏକ ଗ୍ରାମରେ ବାଲ୍ୟଶିକ୍ଷା ଆରମ୍ଭ କରିବାକୁ ହୋଇଥିଲା ।

ଫ୍ଲେମି ପିଲାଦିନେ ବଡ଼ ମେଧାବୀ ଥିଲେ । ବହି ଖଣ୍ଡିଏ ପାଇଲେ ସେ ଭୋକ ଶୋଷ ଭୁଲିଯାଉଥିଲେ । ପ୍ରାଥମିକ ଶିକ୍ଷାଠାରୁ ଆରମ୍ଭ କରି ହାଇସ୍କୁଲ ଶିକ୍ଷା ପର୍ଯ୍ୟନ୍ତ ପଢ଼ାଇ ପାରିବାକୁ ତାଙ୍କର ପିତା ସମର୍ଥ ହୋଇପାରିଥିଲେ । ତାହାପରେ ଅଧିକ ପାଠ ପଢ଼ିବା ଫ୍ଲେମିଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା ।

ସାଧାରଣତଃ ମାଟ୍ରିକ୍ ପାଶ୍ କଲାବେଳକୁ ଗୋଟିଏ ପିଲାକୁ ଷୋଳ ବର୍ଷ ବୟସ ହୋଇଥାଏ । ଫ୍ଲେମି ସେହିଭଳି ଷୋଳ ବର୍ଷ ବୟସରେ ପାଠପଢ଼ାରେ ଡୋରି ବାନ୍ଧିଲେ । ବାପା କହିଲେ ପାଠ ଯଥେଷ୍ଟ ହେଲାଣି । ଏଣିକି ଚାକିରି କର ।

ପିତୃ ଆଦେଶ ପାଳି ଫ୍ଲେମି ଚାକିରି ଅନ୍ୱେଷଣରେ ଲାଗିପଡ଼ିଲେ । ଭାଗ୍ୟକୁ ଗୋଟିଏ ଜାହାଜ ତିଆରି କାରଖାନାରେ ତାଙ୍କୁ କିରାଣୀ ଚାକିରି ଖଣ୍ଡିଏ ମିଳିଗଲା । ନିଜର ନିଷ୍ଠା ଏବଂ ସଚ୍ଚୋଟତା ହେତୁ ସେ ଅଫିସରେ ସମସ୍ତଙ୍କର ପ୍ରିୟ ହୋଇପାରିଲେ । ନିଜ ଆୟରୁ ସେ ସଞ୍ଚୟ କରିବାକୁ ଆରମ୍ଭ କଲେ । ଏହି ସମୟରେ ତାଙ୍କୁ ତାଙ୍କର ଜଣେ ସମ୍ପର୍କୀୟ କିଛି ସମ୍ପତ୍ତି ଦାନ କଲେ । ସଞ୍ଚିତ ଅର୍ଥ ଏବଂ ଏହି ସମ୍ପତ୍ତିକୁ ଏକାଠି କରି ସେ

ବିଚାର କଲେ ଯେ ତାଙ୍କର ଉଚ୍ଚ ଶିକ୍ଷା ପାଇଁ ଆପାତତଃ ଏହା ଯଥେଷ୍ଟ । ତେଣୁ ସେ ସଙ୍ଗେ ସଙ୍ଗେ ଚାକିରୀରୁ ଇସ୍ତଫା ଦେଇ ସେଣ୍ଟ ମେରୀ ମେଡ଼ିକାଲ ସ୍କୁଲରେ ଡାକ୍ତରୀ ବିଦ୍ୟା ପଢ଼ିବା ପାଇଁ ନାମ ଲେଖାଇଲେ ।

ଏହି ଅନୁଷ୍ଠାନରେ ଗ୍ରହ ହେବା ପରେ ପରେ ସେ ନିରବଚ୍ଛିନ୍ନ ଅଧ୍ୟବସାୟ ଫଳରେ ଅଧ୍ୟାପକମାନଙ୍କ ମହଲରେ ସୁପରିଚିତ ଓ ଆଦରଣୀୟ ହୋଇପାରିଲେ । ଡାକ୍ତରୀ ପାଠ ଶେଷ କରିବା ପରେ ପରେ ଧନ ଅର୍ଜନ କରିବା ପାଇଁ ସେ କୌଣସି ଡାକ୍ତରଖାନାରେ ଡାକ୍ତର ରୂପେ ଯୋଗ ନ ଦେଇ ଜ୍ଞାନ ଅର୍ଜନ କରିବା ନିମିତ୍ତ ସେହି ସ୍କୁଲରେ ଗବେଷକ-ରୂପେ ଯୋଗ ଦେଲେ ।

ନିତ୍ୟ ନୂତନ ଅନୁସନ୍ଧିତ୍ସୁ ମନ ତାଙ୍କର ଗବେଷଣାରେ ଲାଗି-ରହିଲା । ଭେଷଜ ବିଭାଗର ଅଧ୍ୟାପକ ଆମରଥ ରାଇଟଙ୍କ ଅଧୀନରେ ସେ ଗବେଷଣା ଆରମ୍ଭ କଲେ । ଏହି ସମୟରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଯୁଦ୍ଧକାଳୀନ ଜରୁରୀ ଡାକରାରେ ଫ୍ଲେମିଙ୍କୁ ସୈନ୍ୟ ବିଭାଗରେ ଡାକ୍ତର ଭାବରେ ଯୋଗଦେବା ପାଇଁ ନିର୍ଦ୍ଦେଶ ମିଳିଲା । ଗବେଷଣା କାର୍ଯ୍ୟ ସ୍ଥଗିତ ରଖି ଦେଶର ଆହତ ଜବାନମାନଙ୍କର ସେବାଶୁଶ୍ରୂଷା କରିବା ପାଇଁ ସେ ସୈନ୍ୟବାହିନୀରେ ଯୋଗ ଦେଲେ ।

ଯୁଦ୍ଧଭୂମିରେ ଆହତ ରୋଗୀମାନଙ୍କର ବିକଳ ଚିତ୍କାର ତାଙ୍କ ହୃଦୟରେ ବିଶେଷ ବ୍ୟଥା ଦେଉଥାଏ । ବିଶେଷତଃ ଯେଉଁମାନଙ୍କର ଗୋଡ଼ କଟିଯାଇଥାଏ, ହାତ କଟିଯାଇଥାଏ, ଦେହ ଖଣ୍ଡିଆ ଖାବରା ହୋଇଥାଏ ସେମାନଙ୍କ ଦେହରେ ଯେତେବେଳେ ଆୟୋଡ଼ିନ୍ ଭଳି ଔଷଧ ଲଗାଇ-ଦିଅନ୍ତି, ସେମାନଙ୍କର ବିକଳ ଯନ୍ତ୍ରଣା ଦେଖିଲେ ପଥର ସୁଦ୍ଧା ପାଣି ହୋଇଯିବ, ଫ୍ଲେମି ଯେତିକବେଳେ ଚିନ୍ତା କଲେ କ'ଣ କରିପାରିଲେ ମାନବସମାଜ ଶୀଘ୍ର ଆରୋଗ୍ୟ ଲାଭ କରିପାରିବ ।

ଯୁଦ୍ଧ ସରିବା ପରେ ଫ୍ଲେମି ପୁଣି ତାଙ୍କ ଗବେଷଣାଗାରକୁ ଫେରି-
ଆସିଲେ । ଆହତ ଜବାନମାନଙ୍କର କରୁଣ ଚିତ୍କାର ତାଙ୍କ ମନରେ
ସଦାବେଳେ ପ୍ରତିଧ୍ୱନିତ ହେବାକୁ ଲାଗିଥାଏ । ତେଣୁ ସେ ଗମ୍ଭୀର ଭାବରେ
ତାଙ୍କର ଗବେଷଣାରେ ମନୋନିବେଶ କଲେ ।

କଥାରେ ଅଛି, ଯାହା ଯେତେବେଳେ ହେବାର ଥାଏ ତାହା
ଆପେ ଆପେ ଘଟେ । ଏହା ବୋଲି ଉଦ୍ୟମ ନ କରି, କର୍ମ ନ କରି
ବସିରହିଲେ ସିଦ୍ଧି ଲାଭ କରାଯାଏ ନାହିଁ । ଦିନକର ଏକ ଅଘଟଣ ଘଟଣା
ଘଟିଲା । ତାରିଖଟା ଯଦିଓ ଇତିହାସରେ ଲେଖା ନାହିଁ ତେବେ ଏହା
ହେଉଛି ୧୯୨. ମସିହାର ଘଟଣା । ରୋଗଜୀବାଣୁ ଚିହ୍ନିବା ଏବଂ କ'ଣ
କଲେ ସେ ଜୀବାଣୁସବୁ ନଷ୍ଟ ହୋଇଯାଇପାରିବେ ତାହାର ଉପାୟ
ଉଦ୍ଭାବନ କରିବା ତ ହେଉଛି ଫ୍ଲେମିଙ୍ଗର ଗବେଷଣାର ପ୍ରଧାନ
ଉଦ୍ଦେଶ୍ୟ । ସେତେବେଳକୁ ଫ୍ଲେମିଂ ଲଣ୍ଡନ ବିଶ୍ୱବିଦ୍ୟାଳୟର ଜୀବାଣୁ
ଗବେଷଣା ବିଭାଗର ମୁଖ୍ୟ ଅଧ୍ୟାପକ ରୂପେ ନିଯୁକ୍ତ ହୋଇ ସାରିଥାନ୍ତି ।
ଥରେ ସେ ଷ୍ଟାଫିଲୋକୋକସ୍ ଜୀବାଣୁଗୁଡ଼ିକୁ ଗୋଟିଏ ପୋଷକ ପାତ୍ରରେ
ବଢ଼ାଇଥିଲେ ଏବଂ ଏହି ପାତ୍ରଟିକୁ ସେ ଝରକା ପାଖରେ ରଖିଥିଲେ ।
କିଛି ଦିନ ପରେ ସେ ଦେଖିଲେ ଯେ ବାହାର ପବନର ସଂସ୍ପର୍ଶରେ ଆସି
ଏହି ପାତ୍ରରେ ଫିମ୍ପି ଜମିଯାଇଛି । ଫ୍ଲେମି ଏହି ଫିମ୍ପିକୁ ପରୀକ୍ଷା କରି
ଦେଖିଲେ ଏଥିରେ ଏକ ପ୍ରକାର ଜୀବାଣୁ ସୃଷ୍ଟି ହୋଇଛନ୍ତି । ତାହାପରେ
ସେ ଫିମ୍ପି ମାରିଯାଇଥିବା ପୋଷକ ପାତ୍ରରୁ ଷ୍ଟାଫିଲୋକୋକସ୍ ଜୀବାଣୁଙ୍କୁ
ନେଇ ପରୀକ୍ଷା କଲା ପରେ ଜାଣିପାରିଲେ ଯେ ଫିମ୍ପି ଲାଗିଥିବା ହେତୁ
ଆଉ ଷ୍ଟାଫିଲୋକୋକସ୍ ଜୀବାଣୁ ମିଳୁ ନାହାନ୍ତି, ସବୁଗୁଡ଼ିକ ନଷ୍ଟ ହୋଇ
ଯାଇଛନ୍ତି ।

ପୂର୍ବ ପ୍ରବୃତ୍ତିରେ ଷ୍ଟାଫିଲୋକୋକସ୍ ଜୀବାଣୁ ସାଧାରଣତଃ
ଦେଖିବାକୁ ମିଳିଥାନ୍ତି । ଏହି ନୂତନ ଗବେଷଣା ଫ୍ଲେମିଙ୍କୁ ବହୁତ ଉତ୍ସାହ

ଯୋଗାଇଲା । ସେ ଚିନ୍ତା କଲେ ଯଦି ଏହି ଫିମ୍ପିରୁ ଔଷଧ ପ୍ରସ୍ତୁତ କରାଯାଆନ୍ତା ତେବେ ଷ୍ଟାଫିଲୋକୋସଜନିତ ଯେତେକ ରୋଗ ଅର୍ଥାତ୍ ନିମୋନିଆ, ବଥ, ଘାଆ, ଅନ୍ୟାନ୍ୟ ଅପରେସନଜନିତ କ୍ଷତ ପ୍ରଭୃତି ଆରୋଗ୍ୟ ହୋଇପାରନ୍ତା ।

୧୯୨୯ ମସିହାରେ ଫ୍ଲେମି ନିଜ ଗବେଷଣା ସମ୍ବନ୍ଧରେ ତାଙ୍କର ମତାମତ ଘୋଷଣା କଲେ ଏବଂ ଏହି ନୂତନ ଔଷଧର ନାମ ପେନ୍‌ସିଲିନ ରଖିଲେ ।

ପେନସିଲିନ ଆବିଷ୍କୃତ ହେବା ସଙ୍ଗେ ସଙ୍ଗେ ତାହା ମଣିଷ ଦେହରେ ଔଷଧ ରୂପେ ବ୍ୟବହୃତ ହୋଇ ନ ଥିଲା । ମଣିଷ ଦେହରେ ବ୍ୟବହୃତ ହେବା ପାଇଁ ଉପଯୁକ୍ତ ପେନସିଲିନ ପରବର୍ତ୍ତୀକାଳରେ ବୈଜ୍ଞାନିକମାନେ ପ୍ରସ୍ତୁତ କରିଥିଲେ । ଏଇ ତ ଅଳ୍ପ ଦିନ ତଳେ ୧୯୪୦ ମସିହାରେ ପେନସିଲିନର ବ୍ୟବହାର ଆରମ୍ଭ ହେଲା । ଯେଉଁଦିନଠାରୁ ପେନସିଲିନ ଔଷଧ ନିମୋନିଆ, ଜ୍ୱର, କାଶ, ପୋଡ଼ା ଘା, କ୍ଷତ, ଅପରେସନ ପ୍ରଭୃତିରେ ବ୍ୟବହୃତ ହେଲା ସେହିଦିନଠାରୁ ଚିକିତ୍ସା ଜଗତରେ ଏକ ବିପ୍ଳବ ସୃଷ୍ଟି ହେଲା । ରୋଗୀମାନେ ଯନ୍ତ୍ରଣାରୁ ଆଶୁ ଆରାମ ପାଇଲେ । ଚିକିତ୍ସକମାନେ ହଇରାଣରୁ ରକ୍ଷା ପାଇଲେ ।

୧୯୪୫ ମସିହାରେ ଫ୍ଲେମିଙ୍କୁ ପେନସିଲିନର ଆବିଷ୍କାର ପାଇଁ ନୋବେଲ ପୁରସ୍କାର ଦିଆଗଲା । ସମଗ୍ର ପୃଥିବୀରେ ତାଙ୍କର ଯଶ ପ୍ରସରି-ବାକୁ ଲାଗିଲା ।

ସେହିଦିନର ସେହି ଫିମ୍ପି ମାରି ଯାଇଥିବା ପୋଷକ ପାତ୍ରକୁ ଫ୍ଲେମି ଯଦି ଅଣଦେଖା କରି ଫିଙ୍ଗି ଦେଇଥାନ୍ତେ ତେବେ ବୋଧହୁଏ ଆଜି ସମଗ୍ର ବିଶ୍ୱରେ ସେ ଅମର ହୋଇପାରି ନ ଥାନ୍ତେ । ସମୟ ସମୟରେ ମଣିଷକୁ ଏଇଭଳି ଭଗବାନ ସହାୟ ହୁଅନ୍ତି ।

ଜୀବନର ଅନ୍ତିମ ସମୟରେ ସେ ନାମ ବହୁ ସମ୍ମାନ, ପ୍ରତିପତ୍ତି ଏବଂ ଧନର ଅଧିକାରୀ ହୋଇଥିଲେ । ପୃଥିବୀର ଯେଉଁ ଦେଶକୁ ସେ ଯାଉଥିଲେ ସେଠାରେ ତାଙ୍କୁ ବିପୁଳ ସ୍ୱାଗତ ସମ୍ବର୍ଦ୍ଧନା ଦିଆଯାଉଥିଲା । ବିଭିନ୍ନ ବିଶ୍ୱବିଦ୍ୟାଳୟ ତରଫରୁ ଭାଷଣମାନ ଦେବା ପାଇଁ ନିମନ୍ତ୍ରଣ ଆସିବା ସଙ୍ଗେ ସଙ୍ଗେ ଅଯାଚିତ ଭାବରେ ଅନେକ ଅଭିନନ୍ଦନ ପତ୍ରମାନ ଆସି ପହଞ୍ଚିବାରେ ଲାଗିଥାଏ ।

୧୯୫୫ ମସିହାରେ ମାତ୍ର ଚଉସ୍ତରି ବୟସ ବର୍ଷରେ ଏହି ମହାନ ବୈଜ୍ଞାନିକଙ୍କର ମହାପ୍ରୟାଣ ହୋଇଥିଲା ।



## ଏହି ଲେଖକଙ୍କର ଆଉ କେତୋଟି ଶିଶୁ ଓ କିଶୋର ସାହିତ୍ୟ

* ଜନନେତା ଜୟପ୍ରକାଶ
* ସନ୍ଥ ବିନୋବା
* ଜ୍ଞାନ୍‌ପିପାସି ଲକ୍ଷ୍ମୀବାଈ
* ବିପ୍ଳବୀ ଭଗତ୍‌ ସିଂ
* ବିପ୍ଳବୀ ଖୁଦିରାମ
* ବକୁଳ ବନର ଗୁରୁ
* ବକୁଳ ବନର ପଣ୍ଡିତ
* ବକୁଳ ବନର ସାଧକ
* ବକୁଳ ବନର ମନୀଷୀ
* ବକୁଳ ବନର ଆଚାର୍ଯ୍ୟ
* ମଧୁବାବୁ
* ବିଜ୍ଞାନ ପ୍ରତିଭା ୫ ଖଣ୍ଡ ( ଏକ ସେଟ୍‌ )
* ମଟଦେଶ ( ଅନୁବାଦ )
* ପିଲାଙ୍କ ପୁରାଣ ଗଳ୍ପଲହରୀ
* ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା